# ଖଣି, ଜଙ୍ଗଲ ଓ ଜନତା

**ସମ୍ପାଦନା:**

ମନୋରଂଜନ ମହାନ୍ତି
ଭୂପେନ ମହାପାତ୍ର
ନିରାକାର ବେଉରା

**ପ୍ରକାଶକ:**

ଗବେଷଣା ଚକ୍ର

**ମୁଦ୍ରଣ:**

ପଦ୍ମା କମରସିଆଲ, ଭୁବନେଶ୍ୱର

**ପ୍ରକାଶ ସମୟ:**

୨୬ ଜୁନ୨୦୦୪

**ସହାୟତା:**

ପଚାଶ ଟଙ୍କା ମାତ୍ର

**MINES, FOREST AND PEOPLE**

***Edited by:***

*Manoranjan Mohanty*
*Bhupen Mohapatra*
*Nirakar Beura*

***Published by:***

Gabeshana Chakra

***Printed at:***

Padma Commercial,
Bhubaneswar

***Date of Publication:***

26th June 2004

**Contribution:**

Rupees Fifty Only

# ସୂଚୀପତ୍ର

# ଗବେଷଣାଚକ୍ରର ବିଭିନ୍ନ ଅଧିବେଶନ ଏବଂ ଆଲୋଚନା ପ୍ରସଙ୍ଗ

| ବର୍ଷ | ଆଲୋଚିତ ମୁଖ୍ୟ ପ୍ରସଙ୍ଗ | ସ୍ଥାନ |
| --- | --- | --- |
| ୧୯୯୪ | ବିକାଶ ପ୍ରକ୍ରିୟାରେ ଗ୍ରାମୀଣ ଦାରିଦ୍ର୍ୟ, ଦଳିତ ଓ ମହିଳା | ଭୁବନେଶ୍ୱର |
| ୧୯୯୫ | ଗ୍ରାମାଞ୍ଚଳର ସମସ୍ୟା | ବ୍ରହ୍ମପୁର |
| ୧୯୯୬ | ବିକାଶ ବ୍ୟବସ୍ଥା ଏବଂ ବିକଳ୍ପ ସଂନ୍ଧାନ | ଖଡିଆଳ |
| ୧୯୯୭ | ଆଦିବାସୀମାନଙ୍କ ସମସ୍ୟା ଓ ପ୍ରତିକାର | ବାରିପଦା |
| ୧୯୯୮ | ଅର୍ଦ୍ଧଶତାବ୍ଦୀର ଶିଳ୍ପାୟନ | ପାରାଦ୍ୱୀପ |
| ୧୯୯୯ | ପରିବେଶ, ବିଜ୍ଞାନ ଓ ବିକାଶ | ରାୟଗଡା |
| ୨୦୦୦ | ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ | ସମ୍ବଲପୁର |
| ୨୦୦୧ | ବନ୍ୟା, ବାତ୍ୟା, ମରୁଡି : ଏହାର ବିଭିନ୍ନ ଦିଗ | ଜଗତସିଂହପୁର |
| ୨୦୦୨ | ଶିକ୍ଷା, ସ୍ୱାସ୍ଥ୍ୟ ଓ ସାମାଜିକ ସୁରକ୍ଷା | ଭୁବନେଶ୍ୱର |
| ୨୦୦୩ | ଖଣି, ଜଙ୍ଗଲ ଓ ଜନତା | ରାଉରକେଲା |
| ୨୦୦୪ | ଜଳ ଅର୍ଥନୀତି ଓ ଜନତା | ଢେଙ୍କାନାଳ |

# ଗବେଷଣା ଚକ୍ର : ଏକ ସଂକ୍ଷିପ୍ତ ପରିଚୟ

*ବିଜୟ ବହିଦାର*

ଓଡ଼ିଶାର ରାଜନୈତିକ ଅର୍ଥନୀତି ତଥା ଜନଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ମଧ୍ୟରେ ଓଡ଼ିଶା ଗବେଷଣା ଚକ୍ରର ଉତ୍ପତ୍ତି ଓ କ୍ରମବିକାଶ । ବିଂଶ ଶତାବ୍ଦୀର ଶେଷ ଦଶକ ଏବଂ ଚଳିତ ଶତାବ୍ଦୀର ପ୍ରାରମ୍ଭିକ ସମୟ ଘଟଣା ବହୁଳ ଏବଂ ଅତ୍ୟଧିକ ଜଟିଳ । ପରିବର୍ତ୍ତନର ପ୍ରକ୍ରିୟା ମଧ୍ୟରେ ଗତି କରୁଥିବା ଓଡ଼ିଶାବାସୀ ଆଜି ଅନେକ ନୂତନ ଆଶଙ୍କା ତଥା ସମ୍ଭାବନାର ସମ୍ମୁଖୀନ । ଦାରିଦ୍ର୍ୟ, ଅନଗ୍ରସରତା, ଦୁର୍ବିପାକ, ବୈଷମ୍ୟ ଆଦି ଚିରାଚରିତ ସମସ୍ୟା ସବୁ ପ୍ରଚଳିତ ଜଗତୀକରଣ ପ୍ରକ୍ରିୟାରେ ଅଧିକ ଅଣାୟତ୍ତ ହୋଇ ପଡିଛନ୍ତି । ଅନ୍ୟ ପକ୍ଷରେ ବିଭିନ୍ନ ନିର୍ବାଚନ ମାନଙ୍କରେ ଦରିଦ୍ର, ନିରକ୍ଷର, ନିଷ୍ପେସିତ ସାମାଜିକ ଗୋଷ୍ଠୀମାନଙ୍କର ଅଧିକ ସଂଖ୍ୟାରେ ମତଦାନ ଓ ନିୟମିତ ପଞ୍ଚାୟତ ନିର୍ବାଚନ ସହିତ ଅଧିକ ସଂଖ୍ୟାରେ ନାରୀ ପ୍ରତିନିଧି ନିର୍ବାଚିତ ହେବା ଫଳରେ ଅନେକ ନୂତନ ସମ୍ଭାବନା ଆମ ରାଜ୍ୟରେ ସୃଷ୍ଟି ହୋଇଛି । ଏହା ବ୍ୟତୀତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆଦିବାସୀ , ଚାଷୀ, ମତ୍ସ୍ୟଜୀବୀ ଓ ଅନ୍ୟାନ୍ୟ ଶୋଷିତ ବର୍ଗମାନେ ପ୍ରଚଳିତ ବିକାଶ ପ୍ରକ୍ରିୟା ବିରୁଦ୍ଧରେ ଏବଂ ନିଜର ଜୀବନ, ଜମି, ପାଣି, ଜଙ୍ଗଲ ଓ ଜୀବିକାର ସୁରକ୍ଷା ପାଇଁ ସଂଗଠିତ ହୋଇ ସ୍ୱର ଉତ୍ତୋଳନ କରୁଛନ୍ତି । ଏ ସମସ୍ତ ସମସ୍ୟା, ଦୂରଗାମୀ ରାଜନୈତିକ, ଅର୍ଥନୈତିକ ପ୍ରକ୍ରିୟା ତଥା ଗୁରୁତ୍ୱପୂର୍ଣ୍ଣ ସାମୟିକ ଘଟଣାବଳୀ ଗୁଡିକର ତତ୍ତ୍ୱ ଓ ତଥ୍ୟ ଭିତ୍ତିକ ଅନୁଧ୍ୟାନ କରିବା ପାଇଁ ଗବେଷଣାଚକ୍ର ପ୍ରୟାସ କରିଆସୁଛି ।

*ଓଡ଼ିଶା ଗବେଷଣା ଚକ୍ର ଏକ ଭିନ୍ନ ଧରଣର ପ୍ରୟୋଗ । ଏହା ଅଧ୍ୟାପକ ଓ ପେଶାଦାର ଗବେଷକମାନଙ୍କ ମଧ୍ୟରେ ସୀମିତ ନୁହେଁ । ଓଡ଼ିଶାର ସମସ୍ୟାକୁ ନେଇ ଚିନ୍ତା କରୁଥିବା ଓ ଓଡ଼ିଶାକୁ ବୁଝିବାକୁ ଚେଷ୍ଟା କରୁଥିବା ଅନେକ ବୁଦ୍ଧିଜୀବୀ ଶିକ୍ଷା, ସାମାଜିକ କାର୍ଯ୍ୟ, ରାଜନୀତି, ଜନଆନ୍ଦୋଳନ, ସାମ୍ବାଦିକତା, ପ୍ରଶାସନ ଆଦି ବିଭିନ୍ନ କ୍ଷେତ୍ରରୁ ଆସି ଗବେଷଣା ଚକ୍ରର ମଞ୍ଚରେ ଏକତ୍ରିତ ହୋଇଥାନ୍ତି ।* ଗବେଷଣା ଚକ୍ର ବିଭିନ୍ନ ସମୟରେ ଆଲୋଚନା ସଭା ଅନୁଷ୍ଠିତ କରାଇବା ସହିତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଗୁରୁତ୍ୱ ଦେଇ ନିୟମିତ ଭାବରେ ବାର୍ଷିକ ଅଧିବେଶନ ଅନୁଷ୍ଠିତ କରାଇ ଆସୁଛି । ଜଗତସିଂହପୁର, ସମ୍ବଲପୁର, ରାୟଗଡା, ପାରାଦ୍ୱୀପ, ବାରିପଦା,

ଖଡିଆଳ, ବ୍ରହ୍ମପୁର, ଭୁବନେଶ୍ୱର ଓ ରାଉରକେଲାରେ ବାର୍ଷିକ ଅଧିବେଶନ ସବୁ ଅନୁଷ୍ଠିତ ହୋଇ ସାରିଛି । ଏହା ବ୍ୟତୀତ ଭୁବନେଶ୍ୱରରେ ପ୍ରତିବର୍ଷ ଡିସେମ୍ବର ଶେଷ ବା ଜାନୁୟାରୀ ଆରମ୍ଭରେ ଏକ ମଧ୍ୟବର୍ତ୍ତୀ କାଳୀନ ଆଲୋଚନା ଚକ୍ର ଆୟୋଜିତ ହୋଇଥାଏ । ଏହିସବୁ ସଭା ଓ ଅଧିବେଶନ ମାନଙ୍କରେ ଦଳିତ, ଆଦିବାସୀ ଓ ନାରୀ ସମସ୍ୟା ସହିତ ଚାଷ, ଶିକ୍ଷା, ପରିବେଶ, ଜଗତୀକରଣ, ବିକାଶ ପ୍ରକ୍ରିୟାର ବିକଳ୍ପ, ଦୁର୍ବିପାକ ଓ ଜନଆନ୍ଦୋଳନ ଆଦି ବିଷୟ ଗୁଡ଼ିକ ଉପରେ ଆଲୋଚନା କରାଯାଇଛି । ଏହା ବ୍ୟତିତ ଆମର ଏକ ବିଶେଷ ଉଦ୍ୟମ ହୋଇଛି ଦାରିଦ୍ର୍ୟ ଉପରେ ଗବେଷଣାମୂଳକ ଆଲୋଚନା । ଏ କ୍ଷେତ୍ରରେ ଖଡିଆଳର ଗବେଷଣା ଚକ୍ର ଶାଖାର ଉଦ୍ୟମ ଖୁବ ପ୍ରଶଂସନୀୟ । ଗବେଷଣାଚକ୍ର ସହିତ ସମ୍ପୃକ୍ତ ଅନେକ ସାଥୀ ସେମାନଙ୍କ ନିଜ ଉଦ୍ୟମରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରଗତିଶୀଳ ଓ ଜନବାଦୀ ପତ୍ରିକାମାନ ପ୍ରକାଶ କରି ଆମର ସାମଗ୍ରିକ ବୌଦ୍ଧିକ ପ୍ରକ୍ରିୟାକୁ ଅଧିକ ବ୍ୟାପକ ଓ ଶାଣିତ କରିବା ସହିତ ଏକ ସମୀକ୍ଷା ମୂଳକ ଓ ସୃଜନଶୀଳ ଜନଚେତନା ସୃଷ୍ଟି କରିବାର ପ୍ରୟାସ କରୁଛନ୍ତି ।

ଓଡ଼ିଶାର ଅପଯଶ ଦାରିଦ୍ର୍ୟ ପାଇଁ । ସମ୍ପଦ କ୍ଷେତ୍ରରେ ଆମେ ନିଜକୁ ଯେତେ ସମୃଦ୍ଧ ବୋଲି ଭାବିଲେ ସୁଦ୍ଧା, ଦାରିଦ୍ର୍ୟ ଦୂରୀକରଣର ସମସ୍ତ ଯୋଜନା ଓ କାର୍ଯ୍ୟକ୍ରମ ବିଫଳ ହୋଇଛି । ଗ୍ରାମାଞ୍ଚଳର ଦାରିଦ୍ର୍ୟ ସମ୍ପର୍କରେ ଗଭୀର ଆଲୋଚନା ମାଧ୍ୟମରେ ଏକ ସର୍ବସମ୍ମତ ମତ ପ୍ରକାଶ ପାଉଛି ଯେ ଗ୍ରାମାଞ୍ଚଳର ଗରିବ ଲୋକେ ସଂଗଠିତ ହେବା ସହିତ ବିକାଶର ଢ଼ାଞ୍ଚାରେ ମୌଳିକ ପରିବର୍ତ୍ତନ ନ ହେଲେ ଦାରିଦ୍ର୍ୟ ଦୂରୀକରଣ ଅସମ୍ଭବ । ଏ କ୍ଷେତ୍ରରେ କେବଳ ପ୍ରଶାସନିକ ଅବହେଳା, ରାଜନୈତିକ ହସ୍ତକ୍ଷେପ ଓ ଦୁର୍ନୀତି ମୁଖ୍ୟ ପ୍ରତିବନ୍ଧକ ନୁହେଁ, ଦାରିଦ୍ର୍ୟ ଦୂରୀକରଣ ନୀତିଗୁଡ଼ିକ ମଧ୍ୟ ତ୍ରୁଟିପୂର୍ଣ୍ଣ ।

ଓଡ଼ିଶା ଗବେଷଣା ଚକ୍ର ଓଡ଼ିଶାର ଅବସ୍ଥାରେ ପରିବର୍ତ୍ତନ ପାଇଁ ଏକ ବ୍ୟାପକ ବୌଦ୍ଧିକ ପ୍ରୟାସ ନିମନ୍ତେ ଅଙ୍ଗୀକାରବଦ୍ଧ । ଏ ଦିଗରେ ଆମର ସଫଳତା ଅତ୍ୟନ୍ତ ସୀମିତ । ଅନେକ ପ୍ରତିଶ୍ରୁତି ରକ୍ଷା କରିବାରେ ଆମେ ବିଫଳ ହୋଇଛୁ, କିନ୍ତୁ ପରିବର୍ତ୍ତନକାମୀ ଜନ ଆନ୍ଦୋଳନ ଗୁଡ଼ିକ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ଓଡ଼ିଶାରେ ବିକଳ୍ପ ବିକାଶର ପଥ ଆବିଷ୍କାର କରିବା ପାଇଁ ଯେଉଁ ବୌଦ୍ଧିକ ଉତ୍ତେଜନା ସୃଷ୍ଟି କରିଛନ୍ତି ତାକୁ ପୁଞ୍ଜିକରି ଗବେଷଣା ଚକ୍ର ଆନ୍ତରିକତାର ସହିତ ତାର ପ୍ରଚେଷ୍ଟା ଜାରୀ ରଖିବ ।



# ମୂଳ ପ୍ରଶ୍ନ

*ଭୂପେନ ମହାପାତ୍ର*

ଏ ପୃଥିବୀ ମଣିଷଙ୍କ ପାଇଁ ଏବଂ ମଣିଷମାନେ ମଧ୍ୟ ପୃଥିବୀ ପାଇଁ । ଏହି ନିୟମ ସୃଷ୍ଟିର ଆରମ୍ଭରୁ ଚଳି ଆସୁଚି । ତାହାହିଁ ଥିଲା ସୃଷ୍ଟିର ଇଚ୍ଛା । ଗୋଟିଏ ଅଲିଖିତ ଚୁକ୍ତି ବଳରେ ମଣିଷ ଉପଭୋଗ କରୁଛି ପୃଥିବୀକୁ । ଆଉ ପୃଥିବୀ ତାର ପସରା ମେଲି ଦେଇଛି ମଣିଷମାନଙ୍କ ଆଗରେ କେବଳ ମଣିଷମାନଙ୍କ ପାଇଁ । ଯୁଗ ଯୁଗରୁ ଏହାହିଁ ଗଡି ଆସୁଛି କେଉଁ ଅନାଦି କାଳରୁ । ଏଇ ନୀତିକୁ ଅନୁସରଣ କରି, ତାହା ଅଲିଖିତ ଥିଲେ ମଧ୍ୟ ମଣିଷ ସେ ଅଧିକାର ସାବ୍ୟସ୍ତ କରି ଆସିଛି ତାର ମାଟି ଉପରେ । ମାଟି ଉପରେ ପ୍ରବାହିତ ଜଳସ୍ରୋତ ଉପରେ ଏବଂ ଜଳସ୍ରୋତ ଓ ମାଟିର ସମନ୍ୱୟ ରକ୍ଷା କରି ମଣିଷକୁ ଜୀବନ ଦାନ କରୁଥିବା ଜଙ୍ଗଲ ଉପରେ । ମଣିଷର ସୃଷ୍ଟି ପାଇଁ ଏ ତିନୋଟିର ଆବଶ୍ୟକତା ଯେପରି ଅନିବାର୍ଯ୍ୟ, ମଣିଷର ଜୀବନଧାରଣ ପାଇଁ ତାର ଆବଶ୍ୟକତା ତାଠାରୁ ଆହୁରି ଅଧିକ । ତେଣୁ ସୃଷ୍ଟିର ଆରମ୍ଭରୁ ମଣିଷ, ମାଟି, ଜଳ ଓ ଜଙ୍ଗଲ ଏମାନେ ଓତଃପ୍ରୋତ ଭାବରେ ଜଡିତ ରହି ସୃଷ୍ଟି ପ୍ରକ୍ରିୟାକୁ ବଞ୍ଚେଇ ରଖିଆସିଛନ୍ତି । ସେ ପ୍ରକ୍ରିୟାରୁ କୌଣସି ଗୋଟିକୁ ଅନ୍ୟଠାରୁ ଅଲଗା କରି ହେବ ନାହିଁ । ଏହା ଏକ ଅବଧାରିତ ସତ୍ୟ ।

କିନ୍ତୁ ଆଜି ଦେଖା ଯାଉଛି, ପୃଥିବୀର କିଛି ମଣିଷ, ସେମାନେ ତାଙ୍କର ବୁଦ୍ଧି ବଳରେ ହେଉ ବା ନିଜର ଜ୍ଞାନ କୌଶଳ ବଳରେ ହେଉ ଏହି ସୃଷ୍ଟି ତତ୍ତ୍ୱକୁ ବିଘ୍ନିତ କରି ସମସ୍ତ ମଣିଷର ବଞ୍ଚିବା ପାଇଁ ନିର୍ଭର କରୁଥିବା ଏହି ଅମୂଲ୍ୟ ସମ୍ପଦ ଗୁଡିକୁ ମଣିଷଠାରୁ ଛଡାଇ ନେଇ କେବଳ ନିଜର ସ୍ୱାର୍ଥ ପାଇଁ ବ୍ୟବହାର କରିବାକୁ ଚାହୁଁଛନ୍ତି । ଏହି ସ୍ୱାର୍ଥବାଦୀ ମଣିଷମାନେ ପୃଥିବୀର ବିଶାଳ ଜନମାନସ ଆଗରେ ଛଳନାର ମାୟାଜାଲ ସୃଷ୍ଟି କରି କିମ୍ବା ପରୋକ୍ଷ/ପ୍ରତ୍ୟକ୍ଷରେ ବଳ ପ୍ରୟୋଗ କରି ଭୂଖଣ୍ଡର ସମସ୍ତ ଜଳ, ଜଙ୍ଗଲ ଓ ଜମିକୁ ସେମାନଙ୍କ ନିଜ ଅକ୍ତିଆରରେ ରଖି ସେମାନଙ୍କ ଲାଭ ଉଦ୍ଦେଶ୍ୟରେ ବ୍ୟବହାର କରିବେ ଏବଂ ଆଉ ସବୁ ମଣିଷଙ୍କୁ ସେ ଲାଭାଂଶ ବିକ୍ରି କରିବେ । ସରଳ ଅର୍ଥରେ କହିବାକୁ ଗଲେ ଓଡ଼ିଶାର ନଦୀ ଆଉ ଓଡ଼ିଶା ବାସୀଙ୍କର ହୋଇ ରହିବ ନାହିଁ । ତାର ଉପକୂଳବାସୀ ସେ ନଦୀ ବ୍ୟବହାର କରି ପାରିବେ ନାହିଁ କି ସେଥିରୁ ମାଛ ଧରି ପାରିବେ ନାହିଁ । ଏ ସବୁ ଅଧିକାର ନ୍ୟସ୍ତ ରହିବ ବହୁଦେଶୀୟ କମ୍ପାନୀ ମାନଙ୍କ ହାତରେ । ଭାରତ ସରକାର ବିଶ୍ୱବ୍ୟାଙ୍କର ଜଳନୀତି ଦ୍ୱାରାରେ ନୂଆ ନୀତି ପ୍ରଣୟନ କଲେଣି ଏବଂ ଓଡ଼ିଶା ସରକାର



ମଧ୍ୟ ୨୦୦୩ ଏପ୍ରିଲ ମାସରେ ନୂଆ ଜଳ ନୀତି ଘୋଷଣା କରି ସାରିଲେଣି । ଚାଷୀ ଆଉ ନଦୀଜଳକୁ ନେଇ ଚାଷ କରି ପାରିବ ନାହିଁ କି ପିଇବା ପାଇଁ ମଧ୍ୟ ବ୍ୟବହାର କରିପାରିବ ନାହିଁ । ଏଥିପାଇଁ ତାକୁ କର ଦେବାକୁ ହେବ ।

ଖାଲି ଜଳ ନୁହେଁ, ବିଶ୍ୱୀକରଣ ଓ ଉଦାରୀକରଣର ନୀତି ଅନୁସାରେ ଏଣିକି ଏହି ବହୁଦେଶୀୟ କମ୍ପାନୀମାନେ ଆମର ସମସ୍ତ ଜଙ୍ଗଲ ଓ ଜମିର ମଧ୍ୟ ଦାୟିତ୍ୱ ଗ୍ରହଣ କରିବେ ଏବଂ ବିନିମୟରେ ଗୋଟାଏ ସ୍ୱାଧୀନ ରାଷ୍ଟ୍ରର ସମସ୍ତ ଜନମଙ୍ଗଳକାରୀ ଦାୟିତ୍ୱ ଯଥା ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ଲୋକମାନଙ୍କୁ ପ୍ରଚୁର ଟିକସ ବିନିମୟରେ ଯୋଗାଇ ଦେବେ । ଅର୍ଥାତ୍ ରାଷ୍ଟ୍ର ଆଉ ୱେଲ ଫେୟାର ଷ୍ଟେଟ ହେଇ ରହିବ ନାହିଁ । ଏହି ନୀତି ଅନୁସାରେ ଏବେ ଆମର ବିଶାଳ ଜଙ୍ଗଲ ସମ୍ପଦ ବିଭିନ୍ନ ଆଳରେ ବହୁଦେଶୀୟ କମ୍ପାନୀ ମାନଙ୍କୁ ଦିଆ ଯାଉଛି ଯାହା ଫଳରେ ସେଠୁ ଆଦିବାସୀମାନଙ୍କୁ ଉଚ୍ଛେଦ କରାଯାଉଚି । ଆମର କହିବାର କଥା- ବିକାଶ ନାଁରେ ମଣିଷ ଜୀବନକୁ ନେଇ ଏ ଯେଉଁ ବ୍ୟବସାୟ ଚାଲିଛି ସେଥିରେ ସମସ୍ତ ବିଶ୍ୱର ସମସ୍ତ ସମ୍ପଦ ଆଜି ମାତ୍ର ଅଳ୍ପ କେତେଜଣଙ୍କ ହାତରେ ରହି ଯାଉଛି ଏବଂ ମଣିଷର ଅନ୍ୟ ବିଶାଳ ଭୂଖଣ୍ଡକୁ ସେମାନେ ନିଜଇଚ୍ଛା ଅନୁସାରେ ବ୍ୟବହାର କରିବାକୁ ଚେଷ୍ଟା କରୁଛନ୍ତି । ସମଗ୍ର ମଣିଷର ଭବିଷ୍ୟତ ପାଇଁ ଏହା ଏକ ବିପଦ ହେଇ ଦେଖା ଦେଇଛି ।

ଓଡ଼ିଶା ଗବେଷଣା ଚକ୍ର ଏହି ସମସ୍ୟା ଉପରେ ଏକ ସେମିନାରର ଆୟୋଜନ କରିଥିଲା । ଏହା ଅନୁଷ୍ଠିତ ହୋଇଥିଲା ଶିଳ୍ପ ନଗରୀ ରାଉରକେଲାରେ ୨୦୦୩ ମସିହା ଜୁନ୍ ମାସରେ । ଏଥିରେ ଓଡ଼ିଶାର ବହୁ ଜ୍ଞାନୀ, ଗୁଣୀ, ବିଦ୍ୱାନ ଓ ସମାଜସେବୀ ଯୋଗଦେଇ ଏହି ମୂଳ ସମସ୍ୟାର ବିଭିନ୍ନ ଦିଗ ଉପରେ ଆଲୋଚନା କରିଥିଲେ । ତାର ନେତୃତ୍ୱରେ ଥିଲେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗର ପ୍ରଫେସର ଶ୍ରୀ ମନୋରଂଜନ ମହାନ୍ତି । ଏହି ଆଲୋଚନା ଚକ୍ରରେ ବହୁ ଉଚ୍ଚକୋଟୀର ପ୍ରବନ୍ଧମାନ ପଠିତ ଓ ଆଲୋଚିତ ହୋଇଥିଲା । ସେ ସବୁକୁ ଏକତ୍ର କରି ପ୍ରକାଶ କରିବା ପାଇଁ ଆମର ବହୁ ଦିନରୁ ଇଚ୍ଛା ଥିଲେ ମଧ୍ୟ ଆମେ ସେତିକି କରି ପାରି ନଥିଲୁ । ଆନନ୍ଦର କଥା ଆଜି ସେତକ ସମ୍ଭବ ହୋଇ ପାରିଛି । ପ୍ରବନ୍ଧ ଗୁଡ଼ିକ ଆମର ମୌଳିକ ସମସ୍ୟାସବୁକୁ ସହଜ ଓ ପ୍ରାଞ୍ଜଳଭାବରେ ଜନ ସାଧାରଣଙ୍କ ଆଗରେ ତୋଳି ଧରିବାକୁ ସକ୍ଷମ ହେବ, ସେଥିରେ ସନ୍ଦେହ ନାହିଁ । ତା ସହିତ ସେ ଗୁଡ଼ିକ ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ମଧ୍ୟ ଉଚ୍ଚତର ଜ୍ଞାନ ଆହରଣ ପାଇଁ ସହାୟକ ହେବ ବୋଲି ଆମର ବିଶ୍ୱାସ ।



# ଖଣି ଓ ଜଙ୍ଗଲ ନୀତିର ଜନବାଦୀ ବିକଳ୍ପ

*ମନୋରଂଜନ ମହାନ୍ତି*

## ଗଣବିକ୍ଷୋଭ ପୁନର୍ବିଚାର ଦାବୀରେ:

ରାୟଗଡା ଜିଲ୍ଲାରେ ଆଲୁମିନା କାରଖାନା ବିରୁଦ୍ଧରେ କାଶୀପୁରକୁ କେନ୍ଦ୍ର କରି ଯେଉଁ ଜନଆନ୍ଦୋଳନ ଆଜିକୁ ୫ବର୍ଷରୁ ଉର୍ଦ୍ଧ୍ୱହେଲା ଚାଲିଛି ତାର ଅଭିଯୋଗ ଓଡ଼ିଶାର ରାଜନେତାମାନେ ଏ ପର୍ଯ୍ୟନ୍ତ ବୁଝିବାକୁ ପ୍ରସ୍ତୁତ ନୁହନ୍ତି । ନିକଟରେ ଆଉ ଏକ ଆଲୁମିନା ପ୍ରକଳ୍ପ ନିୟମଗିରି ବକ୍ସାଇଟକୁ ନେଇ ଲାଞ୍ଜିଗଡ଼ଠାରେ ଶୁଭ ଦିଆଯାଇଛି । ସେଠି ମଧ ଲୋକେ ସ୍ୱର ଉଠେଇଛନ୍ତି ସେ ପ୍ରକଳ୍ପ ବିରୁଦ୍ଧରେ । ଫଳକ ଉପାଡି ନେଇ ଯାଉଛନ୍ତି । ଆଗାମୀ ଦିନରେ ସେଠି ମଧ ଆହୁରି ଅଧିକ ପୋଲିସ ମୁତୟନ ହୋଇ ଲୋକଙ୍କ ଉପରେ ଆକ୍ରମଣ ହେବାର ସମ୍ଭାବନା ଅଛି ।

ଏ' ସବୁ ବିକ୍ଷୋଭକୁ ଓଡ଼ିଶା ବିକାଶର ପରିପନ୍ଥୀ ବୋଲି କହି ସବୁ ବଡ଼ ଦଳର ନେତା ସରକାରଙ୍କ ନୀତିକୁ ସମର୍ଥନ କରନ୍ତି । ଭୋଟପରେ ସରକାର ବଦଳିଲେ ମଧ ଏହିସବୁ ପ୍ରୋଜେକ୍ଟ ଚାଲୁରହେ ।

ଆଜି ସମୟ ଆସିଛି ପ୍ରଶ୍ନ କରିବାର ଯେ ୫୦ ବର୍ଷ ଧରି ଏ ପ୍ରକାର ଯେଉଁ ବିକାଶ ନୀତି ଚାଲିଛି ତା ସତ୍ତ୍ୱେ କାହିଁକି ଓଡ଼ିଶାରେ ଏତେ ମାତ୍ରାରେ ଦାରିଦ୍ର୍ୟ ଓ ଅନଗ୍ରସରତା ରହିଛି ? ଏ ନୀତି ପଛରେ ଥିବା ଆଭିମୁଖ୍ୟରେ କିଛି ଭୁଲ ରହିଛିକି ? ଜନ ଆନ୍ଦୋଳନ ଗୁଡିକର ଦାବୀ ହେଲା ଯେଉଁ ପ୍ରକାର ଖଣି ଓ ଜଙ୍ଗଲ ନୀତି ଚାଲିଛି ଏବଂ ବିଶ୍ୱାୟନ ଆହୁରି ପ୍ରଖର ହୋଇଛି ତାର ପୁନର୍ବିଚାର କରାଯିବା ଦରକାର ଏବଂ ଲୋକାଭିମୁଖୀ ନୀତିର ଅନ୍ୱେଷଣ ହେବା ଆବଶ୍ୟକ, ନଚେତ ଅସନ୍ତୋଷ ଓ ହିଂସା ବଢ଼ି ଚାଲିଥିବ ।

## ପ୍ରାକୃତିକ ସଂପଦ ଓ ମାନବ ସଭ୍ୟତାର ତତ୍ତ୍ୱ:

ଭୂତଳ ସଂପଦ ବ୍ୟବହାରର ଅଧିକାର ମନୁଷ୍ୟର ରହିଛି । କୋଇଲା, ଲୁହାପଥର ଠାରୁ ଆରମ୍ଭକରି ତେଲ ଓ ପାଣି ପର୍ଯ୍ୟନ୍ତ ଆମେ ସେଠୁ ନେଉ । କିନ୍ତୁ



ତାହାକୁ ଏକ ଶିଳ୍ପକେନ୍ଦ୍ରିକ ବ୍ୟବସାୟରେ ପରିଣତ କରି ସେଥିରୁ ଲାଭ ଉଠେଇବା ହେଲା ୟୁରୋପର ଗଲା ୩୦୦ ବର୍ଷର ଇତିହାସ । ପୁଞ୍ଜିବାଦ ତାରି ଭିତ୍ତିରେ ପ୍ରତିଷ୍ଠା ହେଲା ଏବଂ ୟୁରୋପୀୟ ଶିଳ୍ପ କାରିଗରୀ ଓ ସମରଶକ୍ତିକୁ ଅସ୍ତକରି ସାରା ପୃଥିବୀରେ ଉପନିବେଶବାଦ ପ୍ରସାର କଲା ।

ତା ସଂଗେସଂଗେ ପ୍ରଗତିର ଗୋଟିଏ ନୂଆ ସଂଜ୍ଞା ୟୁରୋପ ଦେଲା ଯେ ଖଣିଜ ପଦାର୍ଥ ଭିତ୍ତିକ ସହରୀ ସଭ୍ୟତା ହେଲା ମନୁଷ୍ୟର ଭବିଷ୍ୟତ । ତା ସହିତ ଜଙ୍ଗଲର କାଠ ଓ ଅନ୍ୟାନ୍ୟ ସଂପଦକୁ ମିଶାଇ ଏ ବିକାଶ ପ୍ରକ୍ରିୟା ଆଗେଇଲା । ଏଇ ମାତ୍ର ୩୦ବର୍ଷ ପୂର୍ବେ ଯେତେବେଳେ ବାୟୁମଣ୍ଡଳ ଦୂଷିତ ପ୍ରଶ୍ନ ଉଠିଲା, କାରଖାନାର ରାସାୟନିକ ମଇଳା, ଦୂଷିତ ନଈପାଣି ଇତ୍ୟାଦି ପ୍ରଶ୍ନ ବିଚାରକୁ ନିଆଗଲା ଧୀରେଧୀରେ ସେ ବିକାଶ ଚିନ୍ତାରେ କିଛିଟା ନୂଆ ଭାବନା ଯୋଡାଗଲା । ଭବିଷ୍ୟତ ପିଢ଼ିକୁ ଆଖିରେ ରଖି ବିକାଶ କରାଯାଉବୋଲି "ସଷ୍ଟେନେବ୍‌ଲ ଡେଭଲପମେଣ୍ଟ" ତତ୍ତ୍ୱ ଦିଆଗଲା ।

କିନ୍ତୁ ଏ ପରିବେଶବାଦ ମାତ୍ର ପୁଞ୍ଜିବାଦୀ ବିକାଶଧାରାର ଏକ ଅଳଙ୍କାର ଭାବେ କାମ କରୁଛି । ପ୍ରଗତିର ସଂଜ୍ଞାରେ ମୌଳିକ ପରିବର୍ତ୍ତନ ହେବା ତ ଦୂରେଥାଉ ବିଶ୍ୱୀକରଣ ଫଳରେ ସେଇ ଭାବଧାରା ଆହୁରି ଦୃଢ଼ ହୋଇଛି । ସେ ଭାବଧାରାର ମୂଳକଥା ହେଲା ଯେ ସବୁ ପଦାର୍ଥ ଭୂମି ତଳେ ଥାଉ କି ଭୂମି ଉପରେ ଥାଉ କି ଆକାଶରେ ଥାଉ - ସବୁ ହେଲା ସମ୍ବଳ (ରିସୋର୍ସ) ବା ପୁଞ୍ଜି (କ୍ୟାପିଟାଲ୍) ତାକୁ ଲଗାଇ ସେଥିରୁ ଲାଭ ଉଠେଇବାକୁ ହେବ ।

ଏ ଭାବନାର ବିକଳ୍ପ ହେଲା - ମଣିଷ ଓ ପ୍ରକୃତି ମଧ୍ୟରେ ପରସ୍ପରର ନିର୍ଭରଶୀଳ ସଂପର୍କ ଉପରେ ହିଁ ସଭ୍ୟତା ଗଢ଼ିଉଠିଛି । ପ୍ରକୃତିକୁ ଯେତେ କମ୍ ବଦଳେଇ ମଣିଷତାର ସମାଜ ଚଳେଇ ପାରିବ ସେତେ ଭଲ । ଇତିହାସର ପରିଭାଷା ସେଇ ଅନୁସାରେ ବଦଳାଇ ବୁଝିବାକୁ ହେବ । ସମାଜରେ କ୍ଷମତାଶାଳୀ ଓ ଧନୀ ଲୋକେ କେବେହେଲେ ଏ ଆଭିମୁଖ୍ୟ ଗ୍ରହଣ କରନ୍ତି ନାହିଁ । ସେମାନେ ସବୁ ଜିନିଷକୁ ପୁଞ୍ଜିରେ ପରିଣତ କରି ତା ଦ୍ୱାରା ସମାଜର ଧନ ବଢ଼ାଇବା ନାଁରେ ନିଜ କ୍ଷମତା ଓ ସଂପତ୍ତି ବଢ଼ାଇବାରେ ଲାଗନ୍ତି । ସେମାନଙ୍କର ତତ୍ତ୍ୱ ହେଲା ଯେ ମଣିଷର ଜ୍ଞାନ ବଢ଼ିବା ସଙ୍ଗେ ସେଙ୍ଗ ନୂଆ ଉପାୟ ବାହାର କରି ପ୍ରାକୃତିକ ସଂପଦର ବ୍ୟବହାର କରିବା । ତା ଦ୍ୱାରା ମଣିଷ ଜୀବନ ଆହୁରି ସୁଖମୟ ହେବ । ଏଇ

କଥା କହି ପଶ୍ଚିମ ଦେଶର ପୁଞ୍ଜିଶକ୍ତି ବଢ଼ି ଚାଲିଛି । ପୃଥିବୀର ଯେଉଁଠି ଖଣିଜ ସଂପଦ ଥାଉନା କାହିଁକି ସେଠି ଅବାଧରେ ପଶ୍ଚିମର କଂପାନୀମାନେ ପହଞ୍ଚି ପାରନ୍ତୁ ସେଇଟା ବିଶ୍ୱୀକରଣର ମୂଳଦାବୀ । ସେଇ ଆଳରେ ଉପନିବେଶବାଦ ମଧ୍ୟ ଆଗେଇଥିଲା ।

ଆଜି ତୃତୀୟ ବିଶ୍ୱର ବହୁ ସଚେତନ ଲୋକ ଏଇ ତତ୍ତ୍ୱକୁ ପ୍ରତ୍ୟାଖ୍ୟାନ କରନ୍ତି । ସେମାନେ କହନ୍ତି ମାନବ ସଭ୍ୟତାର ଇତିହାସ ପ୍ରକୃତି ଉପରେ ମନୁଷ୍ୟର ଅକ୍ତିଆରର ଇତିହାସ ନୁହେଁ । ପ୍ରକୃତିର ନିୟମ ବିଷୟରେ ଜ୍ଞାନ ଅର୍ଜନ କରି ମଣିଷ କିପରି ଏକ ସମତାପନ୍ନ, ନ୍ୟାୟବନ୍ତ, ସୁଖୀ ସମାଜ ଗଠନ କରିବା ପାଇଁ ଉଦ୍ୟମ କରିଚାଲିଛି ତାରି ଇତିହାସ । ସେଇଥିପାଇଁ ଆମେ ବିଜ୍ଞାନ, ସମାଜ ଶାସ୍ତ୍ର ଓ କଳାର ଅଧ୍ୟୟନ କରିଥାଉ । କିନ୍ତୁ ଯେଉଁ ଉତ୍ପାଦନ ପ୍ରକ୍ରିୟା ଦ୍ୱାରା ସମାଜରେ ବୈଷମ୍ୟ ବୃଦ୍ଧି ପାଉଛି, ରାଜନୀତି ଏବଂ ଅର୍ଥନୀତିରେ କେନ୍ଦ୍ରୀକରଣ [illegible] ଏବଂ ପ୍ରାକୃତିକ ସଂପଦର ଅବକ୍ଷୟ ଘଟୁଛି ସେ ବିକାଶଧାରାର ପ୍ରତିରୋଧ ହେବା ସୁନିଶ୍ଚିତ ।

## ଓଡ଼ିଶାର ଉପନିବେଶୀୟ ବିକାଶ ପ୍ରକ୍ରିୟା:

ଉପନିବେଶୀୟ ତତ୍ତ୍ୱର ଗୋଟିଏ ସ୍ପଷ୍ଟ ଉଦାହରଣ ହେଲା ଓଡ଼ିଶାରେ ଚାଲିଥିବା ବିକାଶ ପ୍ରକ୍ରିୟା ସ୍ୱାଧୀନତାପରେ ମଧ୍ୟ ଯୋଜନା କାଳଠାରୁ ଆରମ୍ଭକରି ଉଦାରବାଦୀ ଅର୍ଥନୀତି ପର୍ଯ୍ୟନ୍ତ ସେଇ ଆଭିମୁଖ୍ୟରେ ଚାଲିଛି । ତାହେଲା–କିପରି ଓଡ଼ିଶାର ଖଣିଜ ସଂପଦ ଓ ବନ୍ୟ ସଂପଦକୁ ବ୍ୟବହାର କରି ସହରୀ ପୁଞ୍ଜିବାଦର ବିକାଶକୁ ଓଡ଼ିଶା ବାହାରେ ତ୍ୱରାନ୍ୱିତ କରିବା । ଓଡ଼ିଶାର ଶସ୍ତା କଞ୍ଚାମାଲ ଓ ଦରିଦ୍ର ଓଡ଼ିଆଙ୍କର ଶସ୍ତା ଶ୍ରମର ଅସଦ୍‌ବ୍ୟବହାର କରି – ଉପଯୁକ୍ତ ମୂଲ୍ୟ ଦିଆ ନ ଯାଉଥିବାରୁ ଅସତ୍ –ଏହି ରାଜନୈତିକ ଅର୍ଥନୀତିକୁ ଚାଲୁରଖିବା । ଏବଂ ସେଥିପାଇଁ ଏକ ରାଜନୈତିକ ଓ ଅମଲାତାନ୍ତ୍ରିକ ଶ୍ରେଣୀ ତିଆରିକରି ସେଇମାନଙ୍କୁ ହିଁ ଏ ବିକାଶଧାରାରୁ ଲାଭବାନ କରାଇବା । ସେ ଶ୍ରେଣୀ ଉଚ୍ଚଜାତିର – କରଣ, ବ୍ରାହ୍ମଣ, ଖଣ୍ଡାୟତ, କ୍ଷତ୍ରୀୟ ହିଁ ସାଧାରଣତଃ ଏ ପ୍ରକ୍ରିୟାରୁ ଉପକୃତ ହୋଇଛନ୍ତି ଯଦିଓ ସବୁ ଜାତିରେ କିଛିଟା ସ୍ୱଳ୍ପ ମଧ୍ୟବିତ୍ତ ଶ୍ରେଣୀ ବାହାରି ତାଙ୍କର ସହଯୋଗୀ ରୂପେ କାମ କରିଛନ୍ତି । ଏ ଶ୍ରେଣୀ ପ୍ରଚଳିତ ପଦ୍ଧତିର ଏକ ବିଶ୍ୱସ୍ତ ଆୟୁଧ ରୂପେ ନିଜକୁ ପ୍ରତିଷ୍ଠା କରିରଖିଛି ।

ଏ ଖଣିଭିତ୍ତିକ ଅର୍ଥନୀତିର ପ୍ରକୃତ ରୂପ କ'ଣ ? ସେ ବଡ଼ କାରଖାନା ଗୁଡିକ କେବଳ ଖଣିଜ ପଦାର୍ଥକୁ କିଛି ମାତ୍ରାରେ ପ୍ରସେସିଂ କରନ୍ତି, ତାପରେ ତାଙ୍କ ଉତ୍ପାଦନ ଦ୍ରବ୍ୟ ଅନ୍ୟ



ଯାଗାକୁ ବା ବିଦେଶକୁ ପଠାଯାଏ । ଉଦାହରଣ ସ୍ୱରୂପ କେନ୍ଦୁଝରର ଲୁହାପଥର ଓ ତାଳଚେର ର କୋଇଲାରୁ ରାଉରକେଲା କାରଖାନାରେ ଇସ୍ପାତଖଣ୍ଡ ବା ଛଡ ତିଆରି କରାଯାଏ । ତାହା ଲୁଧିଆନା, ଅହମଦାବାଦ ବା ଅନ୍ୟ ଯାଗାକୁ ଯାଇ ସେଠିକା କାରଖାନାରେ ସେଥିରୁ ନାନା ପ୍ରକାର ଖାଉଟୀ ଦ୍ରବ୍ୟ ତିଆରି କରାଯାଏ । ସାଇକେଲ, ଷ୍ଟିଲ ବାସନ, କତୁରୀ ଠାରୁ ଆରମ୍ଭକରି କଳ କବଜା ପର୍ଯ୍ୟନ୍ତ । ଅଶି ଦଶକରେ ନାଲକୋ ହେଲା ବେଳେ ଖୁବ ଆଶାଥିଲା ଆଲମୁନିୟମ ଭିତ୍ତିକ ଜିନିଷ ତିଆରି କାରଖାନା ମଧ୍ୟ ଓଡ଼ିଶାରେ ବସିବ । ତାହା ହେଲା ନାହିଁ । ଆଲୁମିନା ହିଁ ଦେଶ ବିଦେଶକୁ ପଠାଯାଉଛି । ଏବେ ଯେଉଁଠାରେ ଗୋପାଳପୁରରେ ଟାଟା କଂପାନୀର ଆଉଗୋଟିଏ ଇସ୍ପାତ କାରଖାନା ହେବାକୁ ବସିଲା ସେଇଥିପାଇଁ ଲୋକେ ବିରୋଧ କଲେ । ସରକାର କିନ୍ତୁ ତାହାକୁ ଆଗେଇନେବାପାଇଁ ପଦକ୍ଷେପ ନେଇଚାଲିଛନ୍ତି । ରାୟଗଡା ଓ କଳାହାଣ୍ଡିରେ ଆହୁରି ଆଲୁମିନା କାରଖାନା ବସାଇବାକୁ ଯେଉଁ ପ୍ରଚେଷ୍ଟା ହେଉଛି ସେଇ ଚିନ୍ତାଧାରାର ଏକ ଅଂଶ ।

ଖଣିଭିତ୍ତିକ ଶିଳ୍ପର ଅନ୍ୟାନ୍ୟ ଦିଗର ଖୁବ ଗୁରୁତ୍ୱ ରହିଛି । ଏ ସବୁ ଅଞ୍ଚଳରେ ସାଧାରଣତଃ ଆଦିବାସୀ ବାସ କରନ୍ତି । ସେଇମାନଙ୍କୁ ବାସଚ୍ୟୁତ ହେବାକୁ ପଡେ । ତାହା ଦେଶର ବୃହତ୍ ସ୍ୱାର୍ଥ ପାଇଁ ଆବଶ୍ୟକ ବୋଲି କହି ଏଡାଇ ଦିଆଯାଏ । ତା ସଙ୍ଗେ ସଙ୍ଗେ ପ୍ରଦୂଷଣ ଜନିତ ଯେଉଁ ସମସ୍ୟା, ସେ ବିଷୟରେ ବହୁଚର୍ଚ୍ଚା ହେଲାଣି । ପ୍ରାକୃତିକ ସଂପଦ ସୁରକ୍ଷା ଆନ୍ଦୋଳନ ବିଭିନ୍ନ ଯାଗାରେ ବହୁ ଅତ୍ୟାଚାରର ସମ୍ମୁଖୀନ ହୋଇ ଏ ସବୁ ବିଷୟରେ ଲୋକମତ ସୃଷ୍ଟି କରିଛନ୍ତି । ସ୍ଥାନୀୟ ସଂପଦ ଉପରେ ସ୍ଥାନୀୟ ଲୋକଙ୍କର ଅଧିକାରକୁ ଭିଟାମାଟି ଅଧିକାର ବା ରାଇଟ ଟୁ ଆର୍ଥ ବୋଲି ଏକ ମାନବିକ ଅଧିକାର ସ୍ତରକୁ ନିଆ ଯାଉଛି । ସ୍ଥାନୀୟ ଲୋକଙ୍କ ସମ୍ମତି ଏବଂ ନିର୍ଦ୍ଦିଷ୍ଟ ସାମାଜିକ ଓ ପରିବେଶ ଗତ ପରୀକ୍ଷା ବିନା କୌଣସି ପ୍ରକଳ୍ପ ଆରମ୍ଭ ନ ହେଉ ଏ ସଂକ୍ରାନ୍ତରେ ବିଶ୍ୱସାରା ଜନମତ ସୃଷ୍ଟି ହେଲାଣି । ଓଡ଼ିଶାରେ ବାଲିଆପାଳ, ବାଲକୋ, ଚିଲିକା, ଗୋପାଳପୁର ଓ କାଶୀପୁର ଆନ୍ଦୋଳନ ସେଇ ପ୍ରଶ୍ନ ଉଠାଇଛନ୍ତି । ଦଳର ରାଜନେତା ମାନେ ଖଣିଭିତ୍ତିକ ଶିଳ୍ପ ପ୍ରସାରଣକୁ ଜୋର ସୋରରେ ସମର୍ଥନ କରନ୍ତି । ବାସ୍ତବରେ ତାର ଦୁଇଟି କାରଣ ଥାଏ । ପ୍ରଥମଟି ହେଲା ନିର୍ବାଚନ ରାଜନୀତି ଚଲେଇବା ପାଇଁ ଯୋଉ ଅର୍ଥ ଦରକାର ତାହାର ବଡ଼ ଅଂଶ ଖଣି ନିଲାମ ଠାରୁ ଆରମ୍ଭକରି, କାରଖାନାର ବିଭିନ୍ନ ସ୍ତରରେ କଣ୍ଟ୍ରାକ୍ଟର ଓ ବିଭିନ୍ନ ଦଲାଲଙ୍କଠାରୁ ଚାନ୍ଦା ଉଠେଇବାରୁ ଆସେ । ନିର୍ବାଚନ ଯେତେ ଅର୍ଥବହୁଳ ହେଉଛି ସେତେବେଶୀ ଶିଳ୍ପ ଦରକାର । ଓଡ଼ିଶା ଇତିହାସରେ ଖଣି ମାଲିକଙ୍କୁ ନେଇ ଦୁର୍ନୀତି କରିଥିବାର ବହୁ ଉଦାହରଣ



ରହିଛି । ଏବେ କମିଶନ ଭିତ୍ତିକ କାରବାର ବିଶ୍ୱୀକରଣର ଏକ ସାଧାରଣ କଥା । ଦ୍ୱିତୀୟ ହେଲା ଓଡ଼ିଶାର ବଜେଟ ପାଇଁ ଖଣିର ରୟାଲିଟି ହେଲା ଗୋଟିଏ ବଡ଼ ଭଣ୍ଡାର । ଟିକସକୁ ଛାଡ଼ି ସରକାରଙ୍କର ଯେଉଁ ଆୟ ତାର ଅଧାରୁ ବେଶୀ ଖଣି ରୟାଲ୍‌ଟି ଓ ତା ଉପରେ ବସିଥିବା ସେସ୍‌ରୁ ଆସିଥାଏ । (୨୦୦୧-୦୨ରେ ଏହା ଶତକଡା ୫୩.୩୫ ଥିଲା) ତେଣୁ ସରକାର ଚଲେଇବାକୁ ହେଲେ ଖଣିଜ ପଦାର୍ଥକୁ ବ୍ୟବହାର କରିବାକୁ ହେବ । ବେଳେ ବେଳେ ଏଥିରୁ ଆୟ କମିଗଲେ ସରକାର ବ୍ୟତିବ୍ୟସ୍ତ ହୋଇଯାଆନ୍ତି । (୧୯୯୯-୨୦୦୦ରେ ୪୪.୭୩ ହୋଇଯାଇଥିଲା) ।

ଓଡ଼ିଶା ସରକାର ଦଳମତ ନିର୍ବିଶେଷରେ ବିଜୁ ପଟ୍ଟନାୟକ, ଜାନକୀ ପଟ୍ଟନାୟକ, ନବୀନ ପଟ୍ଟନାୟକ ଓ ଅନ୍ୟ ଯେଉଁ ପଟ୍ଟନାୟକଙ୍କର ନେତୃତ୍ୱ ହେଉପଛେ ସମସ୍ତେ ବିଶ୍ୱାସ କରନ୍ତି ଯେ ଓଡ଼ିଶା ଖଣିଜ ସଂପଦରେ ଧନଶାଳୀ ହୋଇଥିଲେ ମଧ୍ୟ ତାର ଶକ୍ତିର ଯଥେଷ୍ଟ ମାତ୍ରାରେ ବ୍ୟବହାର ହୋଇପାରିନାହିଁ । ଦାରିଦ୍ର୍ୟ ଓ ଅନଗ୍ରସରତା ସମସ୍ୟାର ସମାଧାନର ବାଟ ତାଙ୍କୁ ସେଇଠି ମିଳିଥାଏ । ଏ ଭାବନାର ବିରୁଦ୍ଧରେ ଯେତେ ତଥ୍ୟ ବାଢ଼ିଲେ ମଧ୍ୟ ତାଙ୍କୁ ବୁଝେଇବା କଷ୍ଟ । ଖଣି କାମରେ ଲାଗୁଥିବା ଲୋକଙ୍କ ସିଧା ନିଯୁକ୍ତି କମ୍ ହୋଇ ଚାଲିଛି । ୧୯୯୭-୯୮ରେ ମାତ୍ର ୫୯୩୨୬କାମ କରୁଥିବା ବେଳେ ୨୦୦୧-୦୨କୁ ତାହା ଆହୁରି କମି ୪୫୧୩୫ରେ ପହଞ୍ଚିଛି । ପ୍ରାୟ ୪ ଭାଗରୁ ଭାଗେ ଲୋକ ଛଟେଇ ହୋଇଛନ୍ତି । ମେସିନ ଦ୍ୱାରା ଅଧିକ କାମ କରାଯାଉଛି ଆଧୁନିକକରଣ ପ୍ରକ୍ରିୟାରେ । ଖଣି ଓ ଶିଳ୍ପାଞ୍ଚଳ ଚାରିପଟେ ବିକାଶର ବଳୟ ଦୂରର କଥା ଏବେମଧ୍ୟ ଦାରିଦ୍ର୍ୟ, ଅନାହାର ଓ ଅନଗ୍ରସରତା ଭରି ରହିଛି । ରାଉରକେଲା, ତାଳଚେର, ସୁନାବେଡା ଓ ରାୟଗଡା ଗୋଟିଏ ଲେଖାଁ ବିକାଶର ସ୍ତମ୍ଭ ହୋଇ ସମଗ୍ର ଅଞ୍ଚଳର ବିକାଶ କରିବେ ସେ ଚିନ୍ତା ଚରିତାର୍ଥ ହୋଇ ପାରିନାହିଁ ।

### ଜନବାଦୀ ବିକଳ୍ପ:

ବିକାଶ ଚିନ୍ତାରେ ଜନବାଦୀ ଆଭିମୁଖ୍ୟ ଆବଶ୍ୟକ । ସେଥିପାଇଁ ମୌଳିକ ବିକାଶ ତତ୍ତ୍ୱ ଉପରେ ଆଲୋଚନା ଦରକାର । ତା ବୋଲି ଇତିହାସର ବାସ୍ତବିକ ପରିସ୍ଥିତିକୁ ଏଡ଼ି ଦେଇ ଆମେ ଆଉ ଏକ ମୌଳବାଦକୁ ପେଶକରିବା ଭୁଲହେବ । ଖଣିଜ ଓ ବନ୍ୟ ସଂପଦର ବ୍ୟବହାର ହେଉ, କିନ୍ତୁ କୃଷି, ଗ୍ରାମ୍ୟଶିଳ୍ପ ଓ ଜଙ୍ଗଲ ଶିଳ୍ପ କୁ ପ୍ରାଥମିକତା ଦିଆଯାଉ, ଯାହାଫଳରେ ସାଧାରଣ ଜନତା ଲାଭବାନ ହେବେ । ବର୍ତ୍ତମାନ ଠିକ୍ ଓଲଟା



ନୀତି ଚାଲିଛି-। ଚାଷରୁ ଲାଭମିଳୁନି । ଗ୍ରାମ୍ୟ ଓ ଜଙ୍ଗଲ ଶିଳ୍ପ ବୃଦ୍ଧି ପାଇଁ ପଞ୍ଚାୟତଙ୍କୁ ଯେଭଳି କ୍ଷମତା ଓ ପୁଞ୍ଜି ଦିଆଯିବାକଥା ତା ହେଉନି । କୃଷି ଓ ଗ୍ରାମ୍ୟଶିଳ୍ପରେ ସାଧାରଣ ଲୋକେ ରୋଜଗାର ପାଇବେ । ସେଥିପାଇଁ ସେ ପ୍ରକାର ଭୂସଂସ୍କାର ଏବଂ ଆନୁସଙ୍ଗିକ କୃଷିଗତ ସୁବିଧା ଆବଶ୍ୟକ ତାହା ଯୋଗାଇ ଦିଆଯାଉ ।

ଯେତେବେଳେ ପ୍ରତ୍ୟେକ ଅଞ୍ଚଳରେ କୃଷି ଓ ଗ୍ରାମ୍ୟଶିଳ୍ପ ଦ୍ୱାରା ଉନ୍ନତି ଚାଲିଥିବ ସେତେବେଳେ ସ୍ଥାନୀୟ ଲୋକ ନିଷ୍ପତ୍ତିନେବେ ସେ ଅଞ୍ଚଳର ପ୍ରାକୃତିକ ସଂପଦ କିପରି ବ୍ୟବହାର କରାଯିବା ଆବଶ୍ୟକ । ସବୁ ଅଞ୍ଚଳରେ ପଞ୍ଚାୟତ, ଗ୍ରାମୀଣ ଲୋକସମିତି ତଥା ଅନ୍ୟାନ୍ୟ ସ୍ଥାନୀୟ ଲୋକସଂଗଠନଙ୍କୁ ସରକାର ଓ ବିଶେଷଜ୍ଞମାନେ ପ୍ରସ୍ତାବ ଦେଇପାରନ୍ତି କି ପ୍ରକାର ଖଣି ଶିଳ୍ପ ଓ ଜଙ୍ଗଲ ଶିଳ୍ପ କରାଯାଇପାରେ । ସେଇଥିପାଇଁ ଆଇନରେ ଆଦିବାସୀ ଅଞ୍ଚଳର ପଞ୍ଚାୟତମାନଙ୍କୁ ସ୍ୱତନ୍ତ୍ର କ୍ଷମତା ଦିଆଯାଇଛି । ବୃହତ୍ତର ସ୍ୱାର୍ଥ ପାଇଁ ଖଣିଶିଳ୍ପ ତାଙ୍କ ଅଞ୍ଚଳରେ ଲଦିଦେବା ଅବାଞ୍ଛନୀୟ ।

କିନ୍ତୁ ବର୍ତ୍ତମାନର ସ୍ରୋତରେ ତାହା ସମ୍ଭବ ନୁହେଁ । ବିଶ୍ୱୀକରଣର ସଂଗଠନମାନେ ଓଡ଼ିଶା ସରକାରଙ୍କୁ ଆର୍ଥିକ ସଂକଟରୁ ଉଦ୍ଧାର କରିବା ନାଁରେ ସେଇ ଉପନିବେଶୀୟ ଅର୍ଥନୀତିକୁ ଆହୁରି ଦୃଢ଼ତର କରୁଛନ୍ତି । ଓଡ଼ିଆ ମଧ୍ୟବିତ୍ତ ଶ୍ରେଣୀ ପାଇଁ ନୂଆ ନୂଆ ସୁଯୋଗ ସୃଷ୍ଟି ହୋଇଛି । ଓଡ଼ିଶାରେ ଆଇ-ଟି ଓ ମ୍ୟାନେଜମେଣ୍ଟ ସଂସ୍ଥା ବଢ଼ିଚାଲିଛି । ଓଡ଼ିଆ ମଧ୍ୟବିତ୍ତ ଓ ଧନୀକ ଶ୍ରେଣୀ ସେଥିରେ ଲାଭବାନ । କିନ୍ତୁ ଚାରିଭାଗରୁ ତିନିଭାଗ ନିଷ୍ପେସିତ ଜନତା ଭିତରେ ଅସନ୍ତୋଷ ବଢ଼ିଚାଲିଛି ।

ଏ ପରିପ୍ରେକ୍ଷୀରେ ଜନବାଦୀ ବୁଦ୍ଧିଜୀବୀ ଏବଂ ସମସ୍ତ ପ୍ରଗତିଶୀଳ ସଂଗଠନ କୁ ବିକଳ୍ପ ବିକାଶ ତତ୍ତ୍ୱ ଏବଂ ବକଳ୍ପ ବିକାଶଧାରା କୁ ଭିତ୍ତିକରି ଜନଚେତନାର ଏକ ନୂଆ ସ୍ରୋତ ସୃଷ୍ଟି କରିବାକୁ ହେବ ।



# ଓଡ଼ିଶାର ଖଣି ଓ ଖଣିଜଦ୍ରବ୍ୟର ରାଜନୈତିକ ଅର୍ଥନୀତି

*ଗୋଲକ ବିହାରୀ ନାଥ*

ଓଡ଼ିଶା ଜମି, ଜଙ୍ଗଲ, ଜଳ, ଜନ୍ତୁ ଓ ବାଣିଜ୍ୟ ଦ୍ରବ୍ୟର ଗନ୍ତାଘର । ସାରା ରାଜ୍ୟରେ ପ୍ରାକୃତିକ ସମ୍ପଦ ଭରପୁର ହୋଇ ରହିଛି । ବିଶେଷତଃ ଖଣିଜ ସମ୍ପଦର ବହୁଳତା ରାଜ୍ୟକୁ ସ୍ୱତନ୍ତ୍ର ମାନ୍ୟତାପ୍ରଦାନ କରିଛି । ଖଣିଜ ସମ୍ପଦ ଓ ଅନ୍ୟ ପ୍ରାକୃତିକ ସମ୍ପଦ ମଧ୍ୟରେ ତଫାତ ହେଲା ଯେ ଜଳ, ଜଙ୍ଗଲ, ଜନ୍ତୁ ଆଦି ପ୍ରାକୃତିକ ସମ୍ପଦ ପ୍ରାକୃତିକ ନିୟମ ମାଧ୍ୟମରେ ପୁନଃ ନବୀକରଣଯୋଗ୍ୟ କିନ୍ତୁ ଖଣିଜ ସମ୍ପଦକୁ ଥରେ ବ୍ୟବହାର ପରେ ଆଉ ଥରେ ତିଆରି କରାଯାଇପାରିବ ନାହିଁ । ତେଣୁ ଖଣିଜ ସମ୍ପଦର ଉପଯୁକ୍ତ ବିନିଯୋଗ ଓ ସଂରକ୍ଷଣର ପ୍ରୟୋଜନୀୟତା ସର୍ବାଧିକ ।

ଓଡ଼ିଶାରେ ମିଳୁଥିବା ଖଣିଜ ଦ୍ରବ୍ୟମାନଙ୍କ ମଧ୍ୟରେ ରହିଛି ଲୁହାପଥର, କ୍ରୋମାଇଟ୍, କୋଇଲା, ଡୋଲାମାଇଟ୍, ଚିନାମାଟି ଓ ସୀସା ଇତ୍ୟାଦି । ଭାରତରେ ଥିବା କ୍ରୋମାଇଟ୍‌ର ୯୮% ଭାଗ, ବକ୍ସାଇଟର ୭୦%, ଲୁହା ପଥରର ୨୬%, କୋଇଲାର ୨୫%, ଡୋଲାମାଇଟ୍‌ର ୧୨% କେବଳ ଓଡ଼ିଶାରେ ହିଁ ଦେଖାଯାଏ । ଭୂତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ସର୍ଭେ କରି ଓଡ଼ିଶାର ଖଣି ନିର୍ଦ୍ଦେଶାଳୟ ଜାଣିବାକୁ ପାଇଛନ୍ତି ଯେ ଓଡ଼ିଶାରେ ୩୧୨୦ ମେଟ୍ରିକ ଟନ୍ ଲୁହାପଥର, ୧୮୩ ମେଟ୍ରିକ ଟନ୍ କ୍ରୋମାଇଟ୍, ୪୪୩୦୪ ମେଟ୍ରିକ ଟନ୍ କୋଇଲା, ୧୬୨୬ ମେଟ୍ରିକ ଟନ୍ ବକ୍ସାଇଟ, ୧୦୧୭ମେଟ୍ରିକ ଟନ୍ ଚୁନ ପଥର, ୫୨୩ ମେଟ୍ରିକ ଟନ୍ ଡୋଲାମାଇଟ୍ ମହଜୁଦ୍ ରହିଛି । ଏତଦ୍ ବ୍ୟତୀତ ବାଲୁକା, ସୀସା, ତମ୍ବା, ଦସ୍ତା ଆଦି ମୂଲ୍ୟବାନ ରତ୍ନପଥର, ଆରିୟମ୍ ଆଦି ଧାତୁ ମଧ୍ୟ କିଛି କିଛି ପରିମାଣରେ ରହିଛି ।

ଓଡ଼ିଶା ତଥା ଭାରତରେ ଯେତେ ଯାହା ଖଣିଜଦ୍ରବ୍ୟ ରହିଛି, ସେଗୁଡିକ ନବୀକରଣ ଯୋଗ୍ୟ ହୋଇ ନଥିବାରୁ ଭବିଷ୍ୟତରେ ନିଶେଷ ହୋଇଯିବାର ସମ୍ଭାବନା ରହିଛି । ତେଣୁ ସେ ଗୁଡିକୁ ଅବିଚାରିତ ଭାବରେ ବିନିଯୋଗ କଲେ ଏପରି ଏକ ସମୟ ଆସିବ ଯେତେବେଳେ ସେଗୁଡିକ ସମ୍ପୂର୍ଣ୍ଣ ଭାବରେ ନିଶେଷ ହୋଇଯିବ । ତେଣୁ ଏପରି ସମୟ

ଆସିବା ପୂର୍ବରୁ ଖଣିଜଦ୍ରବ୍ୟର ବିନିଯୋଗ ଓ ସଂରକ୍ଷଣ ନିମନ୍ତେ ଦୀର୍ଘମିଆଦି ନୀତିନିୟମ ତିଆରି କରିବା ଆବଶ୍ୟକ । କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଓଡ଼ିଶା ସରକାରଙ୍କର ସେପରି କିଛି ଖଣି ନୀତି ନାହିଁ ।

## ଜାତୀୟ ଖଣିଜଦ୍ରବ୍ୟ ନୀତି ଓ ଓଡ଼ିଶା:

ଓଡ଼ିଶାରେ ସେପରି କିଛି ଖଣିଜଦ୍ରବ୍ୟ ଉତ୍ତୋଳନ ନିମନ୍ତେ ବଧିବଦ୍ଧ ଆଇନ୍ କାନୁନ୍ ବ୍ୟବସ୍ଥା ନ ଥିଲା । ଘରୋଇ ଉଦ୍ୟୋଗରେ ବିଭିନ୍ନ ସ୍ଥାନରେ ଖଣିଜଦ୍ରବ୍ୟ ଗୁଡ଼ିକ ଉତ୍ତୋଳନ କରାଯାଇ ବିଦେଶକୁ ରପ୍ତାନୀ ହେଉଥିଲା । ଓଡ଼ିଶା ତଥା ଭାରତ ଏକ ବିକାଶଶୀଳ ଦେଶ ହୋଇଥିବାରୁ, ସବୁ ବିକାଶଶୀଳ ଦେଶ ପରି ଏଠାରେ ମଧ୍ୟ କୃଷିଜାତ ଦ୍ରବ୍ୟ ଓ ଖଣିଜ ଦ୍ରବ୍ୟ ଉତ୍ପାଦନ ଓ ରପ୍ତାନୀ କରାଯାଉଥିଲା । ଦେଶର ବହୁଭାଗ ଲୋକ ଏହି ପ୍ରାଥମିକ ଦ୍ରବ୍ୟ ଉତ୍ପାଦନରେ ନିୟୋଜିତ ହେଉଥିଲା ଏବଂ ସେଗୁଡ଼ିକୁ ରପ୍ତାନି କରି ଅର୍ଜିତ ଅର୍ଥରେ ଦେଶକୁ ନବୀକରଣ କରିବାର ସ୍ୱପ୍ନ ଦେଖୁଥିଲେ । କିନ୍ତୁ ଆଧୁନିକ କାରୀଗରୀ ଜ୍ଞାନକୌଶଳ ଓ ପୁଞ୍ଜିର ଅଭାବ ତଥା ବ୍ରିଟିଶ ସରକାରଙ୍କର ସାମ୍ରାଜ୍ୟବାଦୀ ଓ ଔପନିବେଶବାଦୀ ନୀତିନେଇ ଦେଶ ଏକ କୃଷି ଓ ଖଣିଜ ଦ୍ରବ୍ୟ ରପ୍ତାନୀକାରୀ ରାଷ୍ଟ୍ରରେ ପରିଣତ ହୋଇଥିଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଇଂଲଣ୍ଡର କଳକାରଖାନା ଚଳେଇବା ନିମନ୍ତେ କଞ୍ଚାମାଲ ଯୋଗାଇବା । ତେଣୁ ବ୍ରିଟିଶ ସରକାରଙ୍କର ଅପସାରଣ ପରେ ୧୯୪୮ ମସିହାରେ ଯେଉଁ ଶିଳ୍ପନୀତି ଘୋଷଣା କରାଯାଇଥିଲା ସେଥିରେ କୋଇଲା ଖଣି, ଯାହା ପୂର୍ବରୁ ଘରୋଇ ମାଲିକାନାରେ ଥିଲା ତାହା ସେମାନଙ୍କ ହାତରେ ରହିବ ଏବଂ ନୂଆ କୋଇଲାଖଣି ଗୁଡ଼ିକ ସରକାରୀ ସ୍ତରରେ ରଖାଯିବାର ବ୍ୟବସ୍ଥା ରହିଲା । ୧୯୫୬ ମସିହାର ଶିଳ୍ପନୀତିରେ ମଧ୍ୟ କୋଇଲା, ଖଣିଜ ତୈଳ, ଲୁହାପଥର, କପର, ସୀସା, ଦସ୍ତା ଆଦି ଖଣିଜଦ୍ରବ୍ୟ ଗୁଡ଼ିକ କେବଳ ହିଁ ସରକାରୀ ମାଲିକାନାଧୀନ ହେବାର ବ୍ୟବସ୍ଥା କରାଯାଇଥିଲା ।

## ସରକାରୀକରଣରୁ ବେସରକାରୀକରଣ:

ଘରୋଇ ଖଣି ଓ ଖାଦାନ ମାଲିକମାନେ ପ୍ରଚୁର ଲାଭ ଆଶାରେ ଖଣିମାନଙ୍କରୁ ଖଣିଜ ଦ୍ରବ୍ୟ ଉତ୍ତୋଳନ କରି ଲାଭବାନ ହେଲେ; କିନ୍ତୁ ଖଣି ଅଞ୍ଚଳର ଜନସାଧାରଣ ତଥା ଖଣି ଗୁଡ଼ିକରେ କାର୍ଯ୍ୟରତ ଶ୍ରମିକ ଶ୍ରେଣୀ ଏହାଦ୍ୱାରା ତୀବ୍ର ଶୋଷଣର ଶୀକାର

ହେଲେ । ଖଣି ମାଲିକମାନଙ୍କର ମଧ୍ୟ ଯୁଗୀୟ ବର୍ବରତା ଓ ପ୍ରକୃତିକୁ ଅସନ୍ତୁଳିତ କରି ରଖିବାର ପ୍ରବୃତ୍ତି ସୀମାଟପି ଯାଇଥିଲା । ଖଣି ନିରାପତ୍ତା କହିଲେ କିଛି ନଥିଲା । ଘରୋଇ ଖଣି ମାଲିକମାନେ ରାଜ୍ୟ ସରକାରଙ୍କୁ ଖଣିବାବଦରେ ରୟାଲଟି ଠିକ୍ ଭାବରେ ନଦେଇ କୋଟି କୋଟି ଟଙ୍କାର ବାକିଆ ରଖୁଥିଲେ । ଏପରିକି ଶ୍ରମିକମାନଙ୍କର ମଜୁରୀ ମଧ୍ୟ ବାକିଆ ରଖି ସେମାନଙ୍କୁ ଶୋଷଣ କରାଯାଉଥିଲା । ଏ ସମସ୍ତ ପ୍ରକାର ଅନୀତି, ଦୁର୍ନୀତି ଓ ଶୋଷଣରୁ ରକ୍ଷା କରିବା ନିମନ୍ତେ କୋଇଲା ଖଣି ଗୁଡ଼ିକର ଯୋଜନାବଦ୍ଧ ବିକାଶ ନିମନ୍ତେ ତଥା ଭବିଷ୍ୟତ ଆବଶ୍ୟକତାକୁ ଆଖି ଆଗରେ ରଖି ଭାରତ ସରକାର ୧୯୭୩ ମସିହା ଜାନୁୟାରୀ ୩୦ ତାରିଖରେ କୋଇଲା ଖଣି ଗୁଡ଼ିକର ଜାତୀୟକରଣ କରିଥିଲେ । କିନ୍ତୁ ୧୯୯୩ ମସିହାରେ ୧୯୭୩ ମସିହାର କୋଇଲା ଜାତୀୟକରଣ ଆଇନକୁ ପରିବର୍ତ୍ତନ କରି ବିଜୁଳି ଶକ୍ତି ଉତ୍ପାଦନ, ଲୌହ ଓ ଇସ୍ପାତ କାରଖାନା ନିମନ୍ତେ ତଥା କୋଇଲାର ମାନବୃଦ୍ଧି ନିମନ୍ତେ ଏହାକୁ ସଫା କରିବା, କାରଖାନା ନିମନ୍ତେ ବ୍ୟବହୃତ ହେବା ପାଇଁ କୋଇଲା ଖଣିକୁ ଘରୋଇ କମ୍ପାନୀମାନଙ୍କୁ ଅନୁମତି ଦିଆଯାଇଥିଲା । ପୁନଶ୍ଚ ୧୯୯୭ ମସିହା ଫେବୃୟାରୀ ୧୭ ତାରିଖରେ କେନ୍ଦ୍ର ସରକାର କମିଟିର ସୁପାରିଶ ଗୁଡ଼ିକ ଗ୍ରହଣ କରି, ଘରୋଇ କମ୍ପାନୀ ମାନଙ୍କୁ କୋଇଲା ଉତ୍ପାଦନ ଓ ବିକ୍ରି ନିମନ୍ତେ କ୍ଷମତା ପ୍ରଦାନ କରିଥିଲେ । ଏହା ସହିତ ୧୯୫୭ କୋଇଲା ଆଇନକୁ ପରିବର୍ତ୍ତନ କରି କୋଇଲା ଶିଳ୍ପକୁ ଘରୋଇ କମ୍ପାନୀ ମାନଙ୍କ ନିମନ୍ତେ ସମ୍ପୂର୍ଣ୍ଣ ଉନ୍ମୁକ୍ତ କରିଥିଲେ । କୋଇଲା ସମେତ ଲୁହାପଥର, ମାଙ୍ଗାନିଜ, କ୍ରୋମାଇଟ୍, ଦସ୍ତା, ସୀସା, ନିକେଲ ଆଦି ଧାତୁକୁ ମଧ୍ୟ ଘରୋଇ କମ୍ପାନୀମାନଙ୍କୁ ଦିଆଯାଇଥିଲା । ଖଣି ଓ ଖଣିଜଦ୍ରବ୍ୟ ଆଇନ ୧୯୫୭ ଜାତୀୟ ଖଣିନୀତି, ୧୯୯୩ ଓ ୧୯୯୧ ଶିଳ୍ପନୀତିର ବିରାଟ ପରିବର୍ତ୍ତନ କରାଯାଇ ଖଣି ଖଦାନ ଗୁଡ଼ିକୁ ଘରୋଇ କମ୍ପାନୀଙ୍କୁ ଦିଆଗଲା । ଭାରତର ପୁଞ୍ଜିପତିମାନଙ୍କ ନିମନ୍ତେ ଖଣି ଓ ଖଦାନଗୁଡ଼ିକୁ ଉନ୍ମୁକ୍ତରଖି ଦେଶର ପ୍ରାକୃତିକ ସମ୍ପତ୍ତି ଉପରେ ଅଳ୍ପ କେତେକ ଏକଚାଟିଆଙ୍କ ଅଧିକାରକୁ ସ୍ୱୀକୃତି ଦିଆଗଲା । ଦେଶର ପ୍ରାକୃତିକ ସମ୍ପଦ ଯାହାକି ନବୀକରଣ ଯୋଗ୍ୟ ନୁହେଁ, ତାକୁ ଦେଶୀୟ ପୁଞ୍ଜିପତିମାନଙ୍କ ହାତକୁ ଦେବା ହରିଲୁଟର ପ୍ରଥମ ପାହାଚ ଥିଲା ।

## ଖଣିଜ ପଦାର୍ଥରେ ବହୁଦେଶୀୟ କମ୍ପାନୀଙ୍କ ଅନୁପ୍ରବେଶ:

ଭାରତ ସରକାରଙ୍କ ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ ଅର୍ଥନୀତିର ମୁଳଦୁଆକୁ ଦୃଢ଼ କରିବା ନିମନ୍ତେ ପୂର୍ବରୁ ଯେଉଁସବୁ କ୍ଷେତ୍ର ସରକାରୀ ଉଦ୍ୟୋଗରେ

ଆରମ୍ଭ କରିବାର ନିଷ୍ପତ୍ତି ନିଆଯାଇଥିଲା, ତାକୁ ଘରୋଇ କମ୍ପାନୀମାନଙ୍କ ନିମନ୍ତେ ଉନ୍ମୁକ୍ତ କରିବା ସଙ୍ଗେ ସଙ୍ଗେ ବୈଦେଶିକ ପୁଞ୍ଜି ବିନିଯୋଗ ପାଇଁ ବହୁଦେଶୀୟ କମ୍ପାନୀମାନଙ୍କୁ ଆମନ୍ତ୍ରଣ କଲେ । ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ବହୁଦେଶୀୟ କମ୍ପାନୀ, ଅଷ୍ଟ୍ରେଲିଆ, ଆମେରିକା, ବ୍ରିଟେନ, କାନାଡା, ଦକ୍ଷିଣ ଆଫ୍ରିକା ଆଦି ଦେଶ ସମୂହ ଭାରତର ଖଣିଜ ଶିଳ୍ପକୁ ଉନ୍ମୁକ୍ତ କରିବା ନିମନ୍ତେ ପ୍ରବଳ ଚାପ ପକାଇଲେ । ସେମାନଙ୍କ ଚାପ ଆଗରେ ମୁଣ୍ଡ ନୁଆଁଇ ଭାରତ ସରକାରର ସଂରକ୍ଷଣ ଓ ବିନିଯୋଗ ନିମନ୍ତେ ଆଗରୁ ଯେଉଁ କଟକଣା ଥିଲା ସେଗୁଡିକ ଧିରେ ଧିରେ ପ୍ରତ୍ୟାହୃତ ହୋଇଗଲା । ପର୍ଯ୍ୟାବରଣ ପ୍ରଦୂଷଣ ତଥା ଅନ୍ୟାନ୍ୟ କାରଣ ଯୋଗୁଁ ଇଂଲଣ୍ଡ ତଥା ଇଉରୋପିଆନ୍ ୟୁନିୟନ ତାର କୋଇଲା ଖାତ ଗୁଡିକରୁ କୋଇଲା ବନ୍ଦ ରଖି ଭାରତ ତଥା ଚୀନ ଭଳି ଦେଶରୁ କୋଇଲା କିଣିବାକୁ ପସନ୍ଦ କରୁଛନ୍ତି । ଭାରତ ଯେତେବେଳେ ତାର ଖଣି ଓ ଖଦାନଗୁଡିକୁ ବୈଦେଶିକ ପୁଞ୍ଜିପତିମାନଙ୍କ ନିକଟରେ ଉନ୍ମୁକ୍ତ କରିଦେବାକୁ ଚାହାଁନ୍ତି, ସେତେବେଳେ ସେ ଦେଶମାନେ ସୁଯୋଗ ହାତଛଡା କରିବାକୁ ନାରାଜ । ବିଶେଷ କରି ପୃଥିବୀର ବିଭିନ୍ନ ଖଣିଜ ଦ୍ରବ୍ୟ ଉତ୍ତୋଳନ ନିମନ୍ତେ କଳକବ୍ଜା ତିଆରି କରୁଥିବା ବହୁଦେଶୀୟ କମ୍ପାନୀମାନେ ବିଶେଷ ଖୁସି ଅଛନ୍ତି ।

ଉଦାରୀକରଣ ଓ ଘରୋଇକରଣ ଅର୍ଥନୀତି ଅନୁସୃତ ହେବା ପରଠାରୁ ବିଶେଷତଃ ୧୯୯୩ ମସିହାଠାରୁ ଖଣିଜ ଦ୍ରବ୍ୟର ଉତ୍ତୋଳନ ନିମନ୍ତେ ସିଧାସଳଖ ବୈଦେଶିକ ପୁଞ୍ଜି ବିନିଯୋଗକୁ ଉତ୍ସାହିତ କରାଯାଇଛି । ଖଣିଜ ସମ୍ପଦ କ୍ଷେତ୍ରରେ ବୈଦେଶିକ ପୁଞ୍ଜି ବିନିଯୋଗ ନିମନ୍ତେ ଆଗରୁ ଅନୁମୋଦନକୁ ଅପେକ୍ଷା କରିବାକୁ ପଡୁଥିଲା । କିନ୍ତୁ ଏବେ ଆଉ ତାହା ଦରକାର ପଡୁନାହିଁ । ଶତକଡା ୫୦ ପ୍ରତିଶତ ବୈଦେଶିକ ପୁଞ୍ଜି ନିମନ୍ତେ ଦ୍ୱାର ଉନ୍ମୁକ୍ତ ଥିବାବେଳେ ଖଣି କ୍ଷେତ୍ରରେ ବୈଷୟିକ ଜ୍ଞାନ ଓ ଅନ୍ୟାନ ସେବା ନିମନ୍ତେ ୭୫% ଭାଗ ବୈଦେଶିକ ପୁଞ୍ଜି ଲଗାଇବାକୁ ନିଷ୍ପିତ କରାଯାଇଛି । ସରକାର କାନାଡା, ଅଷ୍ଟ୍ରେଲିଆ ତଥା ବ୍ରିଟେନରେ ଥିବା ଖଣିଜ ଦ୍ରବ୍ୟ ଉପରେ ବ୍ୟବସାୟ କରୁଥିବା ବହୁ ରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଏରିଅଲ ସର୍ଭେ ନିମନ୍ତେ ଲାଇସେନ୍ସ ମଧ ଦେଇଛନ୍ତି । ଦକ୍ଷିଣ ଆଫ୍ରିକା ତଥା ପୃଥିବୀର ସର୍ବବୃହତ ହୀରା ବ୍ୟବସାୟୀ Dee Beers ଭାରତରେ ୫ଶହ ମିଲିଅନ୍ ଡଲାର ପୁଞ୍ଜି ବିନିଯୋଗ କରି ମିଳିତ ଉଦ୍ୟୋଗରେ ଭାରତରେ ହୀରା ଉତ୍ତୋଳନ ଓ ବ୍ୟବହାର ଉପଯୋଗୀ କରିବା ନିମନ୍ତେ କାରଖାନା ବସାଇବାକୁ ଅନୁମତି ପାଇସାରିଛନ୍ତି ।

## ଖଣିଜଦ୍ରବ୍ୟ ରପ୍ତାନୀରୁ ଆମଦାନୀକୁ ଉତ୍ତୋରଣ:

ଆମ୍ଭେମାନେ ପୂର୍ବରୁ କହିଛୁ ଯେ ଭାରତ ଏକ ଖଣିଜ ଦ୍ରବ୍ୟ ରପ୍ତାନୀକାରୀ ଦେଶ । ଏହା ବ୍ରିଟିଶ ସାମ୍ରାଜ୍ୟବାଦର ଉପନିବେଶ ଥିବାବେଳେ ଏଠାରୁ ଖଣିଜ ଦ୍ରବ୍ୟ ରପ୍ତାନୀ ହୋଇ ବ୍ରିଟିଶ କଳାକାରଖାନାମାନଙ୍କୁ ଯୋଗାଉଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହା ବର୍ତ୍ତମାନ ଏକ ଖଣିଜଦ୍ରବ୍ୟ ଆମଦାନୀ ରାଷ୍ଟ୍ରରେ ପରିଣତ ହୋଇଛି । ଏହା ମାତ୍ରାଧିକ ଶିଳ୍ପ ବିକାଶ ଯୋଗୁଁ ନୁହେଁ ବରଂ ଅସାଧୁ ରାଜନେତା ଓ ଭ୍ରଷ୍ଟ ଅମଲାତନ୍ତ୍ର ଯୋଗୁଁ । କୋଇଲା କଥା ବିଚାରକୁ ନିଆଯାଉ । ଭାରତ ୩୦୦ ମିଲିଅନ୍ ଟନ୍ କୋଇଲା ବର୍ଷକୁ ଉତ୍ପାଦନ କରେ । କିନ୍ତୁ ସରକାରଙ୍କର ଜିଦ୍ ଯେ ସେ ବିଦେଶରୁ କୋଇଲା ଆମଦାନୀ କରିବେ । ସରକାରଙ୍କ କହିବା ଅନୁସାରେ ଭାରତରେ ଥିବା କୋଇଲାରେ ମାତ୍ରାଧିକ ପାଉଁଶ ରହିଛି, ତେଣୁ ସେଗୁଡିକ ଲୁହା କାରଖାନା କିମ୍ବା ଥର୍ମାଲ ପ୍ଲାଣ୍ଟ ନିମନ୍ତେ ଉପଯୁକ୍ତ ନୁହେଁ । ତେଣୁ ସେମାନେ ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ଚୀନରୁ କୋଇଲା ଆମଦାନୀ କରିବେ ।

କିନ୍ତୁ ବାସ୍ତବତା ଅନ୍ୟ ପ୍ରକାରର । ଭାରତରେ କୋଇଲା ଏଜେଣ୍ଟମାନେ ଅମଲାତନ୍ତ୍ର ଓ ରାଜନେତାଙ୍କୁ ବଶୀଭୂତ କରି କୋଇଲା କିଣାବିକାରେ ବ୍ୟସ୍ତ କରାନ୍ତି ଓ ମୋଟା ଅଙ୍କର ମୁନାଫା ରୋଜଗାର କରନ୍ତି । ଦି ପାଓନିଅର ମେ ୨୪ ତାରିଖ ୧୯୯୫ ମସିହାର ଏକ ଖବର ଅନୁସାରେ ଭାରତର ବିଶେଷ କ୍ରିକେଟ ଖେଳାଳୀ କପିଳ ଦେବ ଏପରି ଜଣେ ଏଜେଣ୍ଟ ଯେ କି ଅଷ୍ଟ୍ରେଲିଆର ଗ୍ରୀନକୋର କୋଇଲା କମ୍ପାନୀକୁ ପ୍ରତିନିଧିତ୍ୱ କରନ୍ତି । ତାମିଲନାଡୁ ସରକାର ଯେଉଁ କୋଇଲା ଆମଦାନୀ କରୁଥିଲେ ତାର କିକ୍ ବ୍ୟାକ୍ ଜୟଲଳିତାଙ୍କ ପାଖକୁ ଯାଉଥିଲା ବୋଲି ମଧ ସେହି ସମ୍ବାଦରେ ଉଲ୍ଲେଖ ଅଛି ।

## ଓଡ଼ିଶାରେ ମୁଖ୍ୟ ଖଣିଜଦ୍ରବ୍ୟ ଉତ୍ତୋଳନ:

ଓଡ଼ିଶାରେ ଯଦିଓ ଖଣିଜଦ୍ରବ୍ୟ ଭରପୁର ହୋଇ ରହିଛି, ପରିତାପର ବିଷୟ ଯେ ସେଗୁଡିକ ଉତ୍ତୋଳନ କରି ବ୍ୟବହାର କରିବା ନିମନ୍ତେ ଆମ୍ଭମାନଙ୍କ ହାତରେ ନା ଅଛି ପୁଞ୍ଜି ନା କାରିଗରୀ କୌଶଳ, ନା କଳକବ୍ଜା, ନା ଶିଳ୍ପ କୌଶଳ । ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଖଣିଜଦ୍ରବ୍ୟ ଉତ୍ତୋଳନର ବ୍ୟବସ୍ଥା କିଛି ନଥିଲା । ୧୯୧୦ ମସିହାରେ ମୟୁରଭଞ୍ଜ ଓ କେନ୍ଦୁଝରର ପ୍ରଥମେ ଲୁହାପଥର ଖନନ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ନମୁନା ଆକାରରେ କେତେକ ମୁଖ୍ୟ ଖଣିଜଦ୍ରବ୍ୟ ଉତ୍ତୋଳନର ଇତିହାସ ଆଲୋଚନା କରାଯାଇପାରେ ।

## କୋଇଲା:

୧୮୮୪ରେ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ ପ୍ରଥମେ ଝାରସୁଗୁଡା ଜିଲ୍ଲାର ରାମପୁର ଓ ହିମଗିରିଠାରେ କୋଇଲା ଖନନ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୦୯ ମସିହାରେ ରାମପୁର କୋଇଲା କମ୍ପାନୀ କୋଇଲା ଖନନ କରିଥିଲା । ୧୯୧୭ ମସିହାରେ ଇବ୍ ଉପତ୍ୟକା କୋଇଲା ଖଣି ଖୋଲିଥିଲା । ୧୯୩୯ ମସିହାରେ ବ୍ରିଜମୋହନ ସିଂହ ନାମକ ହେମଗିରି ଗୌନ୍ତିଆଙ୍କ ଠାରୁ ୫ଶହ ଏକର ଜମି କିଣିଥିଲେ । ସେଠାରେ କାଗଜକଳକୁ ଶକ୍ତି ଯୋଗାଣ ନେଇ ସେ ଆହୁରି ୬ଶହ ଜାଗା କିଣି ୧୯୫୫ ମସିହାରେ ଓରିଏଣ୍ଟ କୋଇଲା ଖଣି ନାମକ କୋଇଲା ଖଣି ସ୍ଥାପନ କଲେ । ତେଣୁ ଉଭୟଙ୍କ ନାମ ବ୍ରଜମୋହନ ହୋଇଥିବାରୁ ସେମାନେ କାଗଜ କଳ ଓ କୋଇଲା ଖଣି ଅଞ୍ଚଳକୁ ବ୍ରଜରାଜନଗର ନାମରେ ନାମିତ କରିଥିଲେ ।

୧୮୩୭ ମସିହାରେ ଅନୁଗୁଳ ଜିଲ୍ଲାର ତାଳଚେର ଠାରେ କୋଇଲାର ସନ୍ଧାନ ମିଳିଥିଲା । ୧୮୫୫ ମସିହାରେ ଭାରତର ଜିଓଲୋଜିକାଲ ସର୍ଭେ ଅନୁଧାନ କରି ତାଳଚେର କୋଇଲା ଖଣି ଅଞ୍ଚଳ ଗୁଡିକୁ ଚିହ୍ନିତ କରିଥିଲେ । ୧୮୨୫ ମସିହାରେ ଭାରତ ସରକାରଙ୍କ ପୂର୍ତ୍ତ ବିଭାଗ ତାଳଚେରର ଗୋପାଳପ୍ରସାଦଠାରୁ କୋଇଲା ଖନନ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୨୧ ମସିହାରେ ଭେଲିଅର ଲିମିଟେଡ ବେଙ୍ଗଲ ନାଗପୁର ରେଲୱେ ଏବଂ ମାଡ୍ରାସ ସାଉଥ ମରାଠା ରେଲୱେ କୋଇଲା ଖନନ କାର୍ଯ୍ୟ ହତକୁ ନେଇଥିଲେ । ୧୯୨୬ ମସିହାରେ ହାଣ୍ଡିଧୁଆ ଭୂତଳ ଖଣି କାର୍ଯ୍ୟ କରିଥିଲା । ୧୯୩୦ ମସିହାରେ ବି.ଏନ୍.ର ଡେରା ଓ ମାଡ୍ରାସ ସାଉଥ ମରାଠା ରେଲୱେ ଦେଉଲବେଡା କୋଇଲା ଖଣିର କାର୍ଯ୍ୟାରମ୍ଭ କରିଥିଲେ । ବର୍ତ୍ତମାନ ଏ ସବୁ ଖଣି ମହାନଦୀ କୋଇଲା ଖଣିର ଅନ୍ତର୍ଗତ ।

୧୯୫୭ ମସିହାରେ ନାସନାଲ କୋଲ ଡେଭେଲପମେଣ୍ଟ କର୍ପୋରେସନ୍ ତିଆରି ହେଲା ପରେ ଏହା ଅଳ୍ପ କିଛି କୋଇଲା ଖଣି ଆରମ୍ଭ କରିଥିଲା । କୋଇଲା ଜାତୀୟକରଣ ହେଲାପରେ ତାଳଚେର କୋଇଲା ଖଣି ମେଟାଲ କୋଲଫିଲଡ୍ ହାତରେ ରହିଲା ଓ ଇବ୍ ଉପତ୍ୟକା କୋଇଲା ଖଣି ସାଉଥ ଇଷ୍ଟର୍ଣ୍ଣ କୋଲଫିଲ୍ଡ ହାତରେ ଥିଲା । ୧୯୯୨ ମସିହାରେ ଉକ୍ତ କୋଇଲା ଖଣି ଗୁଡିକୁ ମହାନଦୀ କୋଲଡ୍ ଫିଲଡ୍ ଲିମିଟେଡ ହାତରେ ରଖାଗଲା । ଏବେ ଏହାକୁ ଘରୋଇକରଣ କରିବା ନିମନ୍ତେ ମସୁଧା ଚାଲିଛି ।

## କ୍ରୋମାଇଟ୍:

କ୍ରୋମାଇଟ୍ ପଥର ଖଣି ଗୁଡିକରୁ କ୍ରୋମାଇଟ୍ ଉତ୍ତୋଳନ କରି ଚାର୍ଜକ୍ରୋମ ଓ ଫେରୋକ୍ରମ କାରଖାନାମାନ ବସାଇବା ନିମନ୍ତେ ସରକାରୀ ତଥା ବେସରକାରୀ ଉଦ୍ୟମ ଆରମ୍ଭ ହୋଇଛି । ଓଡ଼ିଶାରେ ପ୍ରାୟ ୨୦୦ ନିୟୁତ ଟନ୍ କ୍ରୋମାଇଟ୍ ପଥର ରହିଛି । କ୍ରୋମାଇଟ୍ ପଥର ଖଣି ଗୁଡିକ ଓଡ଼ିଶାରେ ଓଏମ୍‌ସି, ଆଇଡିସି, ଇମ୍‌ଫା ଓ ଟିସ୍କୋ ଆଦି କମ୍ପାନୀକୁ ଲିଜ୍ ମିଳିଛି । ଫଳରେ ସେମାନେ ଚାର୍ଜକ୍ରୋମ ଓ ଫେରୋକ୍ରମ ଉତ୍ପାଦନ କରି ବିଦେଶକୁ ପଠାଉଛନ୍ତି । ଜଗତୀକରଣ ପ୍ରକ୍ରିୟାପରେ ବିଦେଶୀ କମ୍ପାନୀମାନେ ଶସ୍ତା ଦରରେ ଫେରୋକ୍ରମ ଓ ଚାର୍ଜକ୍ରୋମ ବିକ୍ରି କରିବା ଫଳରେ ଓଡ଼ିଶାରେ ବହୁ କାରଖାନା ବନ୍ଦ ପ୍ରାୟ । ତେଣୁ ସେମାନେ କ୍ରୋମ ପଥର ପାରାଦ୍ୱୀପ ବନ୍ଦର ଦେଇ ବିଦେଶକୁ ରପ୍ତାନୀ କରୁଛନ୍ତି ।

## ବକ୍‌ସାଇଟ୍:

ଓଡ଼ିଶାରେ ୧୭୩୩ ମିଲିଅନ୍ ଟନ୍ ବକ୍‌ସାଇଟ୍ ଗଚ୍ଛିତ ଥିବାର ଆକଳନ କରାଯାଇଛି । ଏହା ଭାରତବର୍ଷରେ ଥିବା ସମଗ୍ର ବକ୍‌ସାଇଟ୍‌ର ଶତକଡା ୭୦ଭାଗ ହେବ । ଓଡ଼ିଶାର ସମ୍ବଲପୁର, ବରଗଡ, ବଲାଙ୍ଗୀର, କଳାହାଣ୍ଡି ଓ କୋରାପୁଟ ଅଞ୍ଚଳ ବକ୍‌ସାଇଟ୍ ଅଞ୍ଚଳ ଭାବରେ ପରିଚିତ । ବଲାଙ୍ଗୀର, ବରଗଡ ଜିଲ୍ଲାର ଗନ୍ଧମାର୍ଦ୍ଦନ ପର୍ବତରେ ୨୧୩୦ ଲକ୍ଷ ଟନ୍, ବାଫଲିମାଳି ପାହାଡରେ ୧୯୫୮ ଲକ୍ଷ ଟନ୍, ରାୟଗଡା ଜିଲ୍ଲାର କାଶୀପୁର ବ୍ଲକର ଶାଶୁବୋହୁମାଳୀରେ ୮୧୦ ଲକ୍ଷ ଟନ୍, ରାୟଗଡା-କଳାହାଣ୍ଡି ଜିଲ୍ଲାର ସିଜୁଆଲି ପାହାଡରେ ୮୬୦ ଲକ୍ଷ ଟନ୍, କୁଟ୍ରୁମାଳି ପାହାଡରେ ୪୦୦ ଲକ୍ଷ ଟନ୍, କୋରାପୁଟର ଲକ୍ଷ୍ମୀପୁର ବ୍ଲକରେ କୋଡିଙ୍ଗମାଳି ପାହାଡରେ ୯୧୪ ଲକ୍ଷଟନ୍ ବକ୍‌ସାଇଟ୍ ଗଚ୍ଛିତ ଅଛି । ସେହିପରି କଳାହାଣ୍ଡି ଜିଲ୍ଲାର ଥୁଆମୂଳ ରାମପୁର ବ୍ଲକରେ, ଖଣ୍ଡୁଆଳମାଳି, ଲାଞ୍ଜିଗଡ ବ୍ଲକର ନିୟମଗିରି, ଦସମନ୍ତପୁର ବ୍ଲକର ଘୁସୁରିପାଲି ଓ ସିଜିମାଲି ଅଞ୍ଚଳରେ ବ୍ୟାପକ ବକ୍‌ସାଇଟ୍ ରହିଛି । ୧୯୮୧ ମସିହାରେ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ନାଲକୋକୁ ଦାମନଯୋଡି ଠାରେ ବକ୍‌ସାଇଟ୍ ଉତ୍ତୋଳନ ପାଇଁ ଏକ ଆଲୁମିନା କାରଖାନା ନିମନ୍ତେ ଲିଜ ଦିଆସରିଛି । ଏହା ଯଦିଓ ଏକ ଲାଭଜନକ ସଂସ୍ଥା ତଥାପି ସରକାର ଏହାକୁ ଘରୋଇକରଣ କରିବା ନିମନ୍ତେ ପଦକ୍ଷେପ ନେଉଛନ୍ତି । ସେହିପରି ୧୯୮୨ ମସିହାରେ ବାଲକୋ, ଅନ୍ୟ ଏକ ରାଷ୍ଟ୍ରାୟତ୍ତ କମ୍ପାନୀକୁ ଗନ୍ଧମାର୍ଦ୍ଦନ ଠାରେ ବକ୍‌ସାଇଟ୍ ଉତ୍ତୋଳନ

କରିବାକୁ ଲିଜ୍ ଦିଆଯାଇଥିଲା । କିନ୍ତୁ ଜନ ଆନ୍ଦୋଳନକୁ ସାମ୍ନା କରି ନ ପାରି ବାଲକୋ ବକ୍‌ସାଇଟ୍ ଉତ୍ତୋଳନରୁ ଓହରିଗଲା । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ଭାରତ ସରକାର ବାଲକୋକୁ ଷ୍ଟେରଲାଇଟ୍ କମ୍ପାନୀକୁ ବିକ୍ରୀ କରିଦେଲେ ଏବଂ ବର୍ତ୍ତମାନ ଷ୍ଟେରଲାଇଟ୍ କମ୍ପାନୀ ପୁନଶ୍ଚ ଖଣି ଲିଜ୍ ନିମନ୍ତେ ଆଶାୟୀ ହୋଇ ଦରଖାସ୍ତ କରିଛି । ଏବେ କେବଳ ଷ୍ଟେରଲାଇଟ୍ ନୁହେଁ ଅନ୍ୟ ଅନେକ କମ୍ପାନୀକୁ ବିଭିନ୍ନ ବକ୍‌ସାଇଟ୍ ଉତ୍ସ ଗୁଡିକୁ ଦେଶୀ ବିଦେଶୀ କମ୍ପାନୀମାନଙ୍କୁ ଲିଜ୍ ଆକାରରେ ଦିଆଚାଲିଛି । ପଞ୍ଚପଟମାଳି ବକ୍‌ସାଇଟ୍ ଖଣିକୁ ନାଲକୋ, କୋଡିମାଳି ଓ ନୂଆପଡାର କୁଟ୍ରୁମାଳି ବକ୍‌ସାଇଟ୍ ଖଣିକୁ ଆଲକୋଆ ଓ ଏଲ.ଏଣ୍ଡ.ଟିକୁ, ରାୟଗଡା ଜିଲ୍ଲାର ଶାଶୁବୋହୁମାଳି ଓ ପାସାଙ୍ଗମାଳି ବକ୍‌ସାଇଟ୍ ଖଣିକୁ ବାଲକୋକୁ, କଳାହାଣ୍ଡି ଜିଲ୍ଲାର କର୍ଲାପାଟ ଓ ଲାଞ୍ଜିଗଡ ଠାରେ ଥିବା ନିୟମଗିରୀ ବକ୍‌ସାଇଟ୍ ଖଣିକୁ ଷ୍ଟେରଲାଇଟ୍ କମ୍ପାନୀକୁ ଲିଜ୍ ଦିଆଯାଇଛି । ରାୟଗଡା ଜିଲ୍ଲାର କାଶୀପୁର ଠାରେ ବାଫଲିମାଳି ପର୍ବତରୁ ବକ୍‌ସାଇଟ୍ ଲିଜ୍ ପାଇଛନ୍ତି ଉତ୍କଳ ଆଲୁମିନିୟମ ଇଣ୍ଟରନ୍ୟାସନାଲ, ଯାହାକି ଇନ୍‌ଡଲ, ନରୱେର ହାଇଡ୍ରୋ ଓ କାନାଡାର ଆଲକାନ କମ୍ପାନୀମାନଙ୍କର ଏକ ମିଳିତ ଉଦ୍ୟୋଗ । ପରେ ଅବଶ୍ୟ ସ୍ଥାନୀୟ ଲୋକଙ୍କ ବିରୋଧକୁ ଉପଲବ୍ଧି କରି ନରୱେର ହାଇଡ୍ରୋ କମ୍ପାନୀ ଆଲୁମିନା ପ୍ରକଳ୍ପରୁ ଓହରି ଯାଇଛନ୍ତି ।

### ଚୂନପଥର:

ବିଂଶ ଶତାବ୍ଦୀର ପଞ୍ଚମ ଦଶକର ମଧ ଭାଗରେ ବରଗଡ ଜିଲ୍ଲାର ଆମ୍ବାବନା ବ୍ଲକର ଡୁଙ୍ଗୁରୀ ଠାରେ ଚୂନ ପଥରର ସନ୍ଧାନ ମିଳିଥିଲା । ୧୯୨୧ ମସିହାରେ ଓଡ଼ିଶାର ମାଇନିଂ କର୍ପୋରେସନ୍‌କୁ ଏହାର କାର୍ଯ୍ୟ ନିମନ୍ତେ ଲିଜ୍ ଦିଆଯାଇଥିଲା । କିନ୍ତୁ ୧୯୨୮ ମସିହାରେ ବରଗଡ ଠାରେ ହୀରା ସିମେଣ୍ଟ କାରଖାନାକୁ ଚୂନପଥର ଯୋଗାଇବା ନିମନ୍ତେ ପ୍ରଥମେ ଖଣି କାର୍ଯ୍ୟ ଆରମ୍ଭ କରାଗଲା । ପରବର୍ତ୍ତୀ ସମୟରେ ଓଡ଼ିଶା ସରକାରଙ୍କ ଆଇ.ଡି.ସି. ଅଧିନରେ ଏହା ରହିଲା । ବର୍ତ୍ତମାନ ବରଗଡର ଇଉକଲ ସିମେଣ୍ଟକୁ ଘରୋଇକରଣ କରାଯିବାର ମସୁଧା ଚାଲିଛି । ଏହାର ଘରୋଇକରଣ ହେଲେ ଚୂନପଥର ଖଣି ସବୁ ଘରୋଇ ମାଲିକାନାକୁ ଚାଲିଯିବ ।

ସେହିପରି ସୁନ୍ଦରଗଡ ଜିଲ୍ଲାର ରାଜଗାଙ୍ଗପୁର ନିକଟସ୍ଥ ଲାଞ୍ଜିବେରଣା ଚୂନପଥର ଖଣିର ସନ୍ଧାନ ୧୯୪୦ ମସିହାରେ ବିଶ୍ରା ଷ୍ଟୋନ୍ ଲିମିଟେଡ କରିଥିଲା । ୧୯୫୨ ମସିହାରେ ରାଜଗାଙ୍ଗପୁର ଠାରେ ଡାଲମିଆ କମ୍ପାନୀ ସିମେଣ୍ଟ କାରଖାନା ବସାଇବାରୁ

ଉକ୍ତ କମ୍ପାନୀ ଲିଜ ସୂତ୍ରରେ ଡାଲମିଆଙ୍କ ହାତକୁ ସ୍ଥାନାନ୍ତରିତ ହେଲା । ମୟୁରଭଞ୍ଜ, କେନ୍ଦୁଝର ଓ କଟକ ଜିଲ୍ଲାରେ ଥିବା ଡୋଲାମାଇଟ୍ ଓ ଲୁହାପଥର ଖଣି ଗୁଡିକ ଟାଟକୁ ଲିଜ୍ ଦିଆଯାଇଛି । ଫଳରେ ଟାଟାଙ୍କ ଲୌହ ଓ ଇସ୍ପାତ କାରଖାନା ଚଳାଇବା ନିମନ୍ତେ ଓଡ଼ିଶାର ଖଣି ଖାଦାନ ଗୁଡିକ ନିରନ୍ତର ଲୁହା ପଥର ଓ ଡୋଲାମାଇଟ୍ ଯୋଗାଇ ଆସୁଛନ୍ତି ।

ଓଡ଼ିଶାର ବର୍ତ୍ତମାନ କାର୍ଯ୍ୟକାରୀ ହେଉଥିବା ଶହ ଶହ ଖଣି ଖାଦାନର ଇତିହାସ ଅଳ୍ପ ବହୁତେ ଏହିପରି । ଖଣିଜ ପଦାର୍ଥଗୁଡିକ ଯଦିଓ ପ୍ରକୃତିଦତ୍ତ ଓ ସମାଜର ସବୁ ଶ୍ରେଣୀର ଲୋକମାନଙ୍କର ବିଶେଷ ଭାବରେ ସ୍ଥାନୀୟ ଆଦିବାସୀ, ହରିଜନ, ଗିରୀଜନମାନଙ୍କର ଏହା ଉପରେ ସମ୍ପୂର୍ଣ୍ଣ ଅଧିକାର ଅଛି ତଥାପି ସେଗୁଡିକ ରାଜସ୍ୱ ଆଦାୟ ନାମରେ ଅତି ନଗଣ୍ୟ ଦରରେ ବେସରକାରୀ ସଂସ୍ଥାମାନଙ୍କୁ ଲିଜ୍ ଆକାରରେ ଦିଆଯାଉଛି । ଯଦିଓ ଖଣିଜ ଦ୍ରବ୍ୟର ଗୁରୁତ୍ୱକୁ ଉପଲବ୍ଧି କରି ସେଗୁଡିକ ସରକାରଙ୍କ କର୍ତ୍ତୃତ୍ୱରେ ରଖିବାର ୧୯୪୮ ଓ ୧୯୫୬ ଶିଳ୍ପନୀତିରେ ବ୍ୟବସ୍ଥା କରାଯାଇଥିଲା, କିନ୍ତୁ ବର୍ତ୍ତମାନ ସରକାର ସେଗୁଡିକୁ ଲିଜ୍ ଆକାରରେ ଘରୋଇ କମ୍ପାନୀମାନଙ୍କୁ ଦେଉଛନ୍ତି । ଫଳରେ ସେ ଗୁଡିକ ରାଜ୍ୟର ସ୍ୱାର୍ଥ ସାଧନ କରିବା, ଆୟ ବଢ଼ାଇବା, ନିଯୁକ୍ତି ବଢ଼ାଇବା, ଅନୁସଙ୍ଗିକ ଶିଳ୍ପ ପ୍ରତିଷ୍ଠା କରିବା ବଦଳରେ ଘରୋଇ କମ୍ପାନୀ ତଥା ବିଦେଶୀ କମ୍ପାନୀମାନଙ୍କୁ ମୁନାଫା ବଢ଼ାଇବାରେ ମୁଖ୍ୟ ସାଧନ ହୋଇଛି ।

## ଖଣିଜ ସମ୍ପଦ, ବିସ୍ଥାପନ ଓ ଥଇଥାନ ସମସ୍ୟା

ପ୍ରାକୃତିକ ସମ୍ପଦର ସୁବିନିଯୋଗ ଉପରେ ଦେଶର ବିକାଶ ନିହିତ ଅଛି । ତେଣୁ ବିଭିନ୍ନ ସରକାରୀ ତଥା ବେସରକାରୀ ସଂସ୍ଥା ଖଣି ଖାଦାନ ଗୁଡିକରୁ ଖଣିଜଦ୍ରବ୍ୟ ଉତ୍ତୋଳନ କରି, ଜଙ୍ଗଲ ସମ୍ପଦର ବ୍ୟବହାର କରି ତଥା ଜଳସମ୍ପଦକୁ ବଡ ବଡ ବନ୍ଧ ମାଧମରେ ଅଟକାଇ ଜଳସେଚନ ତଥା ବିଦ୍ୟୁତ ଯୋଗାଣ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ବିଭିନ୍ନ ପ୍ରକଳ୍ପ ଗୁଡିକର ଆବଶ୍ୟକତା ଯେ ନାହିଁ ତାହା ନୁହେଁ, କିନ୍ତୁ ପ୍ରସଙ୍ଗର ପୁଞ୍ଜିଭିତ୍ତିକ ବିକାଶ ପ୍ରକ୍ରିୟା ବହୁତ ଲୋକଙ୍କୁ ସେମାନଙ୍କ ଭିଟାମାଟିରୁ ଜବରଦସ୍ତ ବେଦଖଲ କରୁଛି । ଫଳରେ ସେମାନେ ନିଜର ଭିଟାମାଟିରୁ ଉତ୍ଖାତ୍ ହୋଇ ଦାରିଦ୍ର୍ୟର ଅତଳ ଗର୍ଭକୁ ଠେଲି ହୋଇଯାଉଛନ୍ତି । ଓଡ଼ିଶା ସମେତ ସାରା ଭାରତରେ ଏପରିକି ସାରା ବିଶ୍ୱରେ ଏପ୍ରକାର ବିନାଶକାରୀ ବିକାଶ ପ୍ରକ୍ରିୟା ବିରୁଦ୍ଧରେ ଜନମତ ଜାଗ୍ରତ ହେଉଛି । ପ୍ରକଳ୍ପ ଗୁଡିକ ଜନସାଧାରଣଙ୍କ ହିତ ନିମନ୍ତେ ଉଦ୍ଦିଷ୍ଟ ବୋଲି ପ୍ରଚାର ହୋଇଥାଏ ଏବଂ ତା ବଦଳରେ

ବାସଚ୍ୟୁତ ଲୋକଙ୍କୁ କିଛି ତ୍ୟାଗ ସ୍ୱୀକାର କରିବାକୁ ପଡିବ ବୋଲି ସଫେଇ ଦିଆଯାଇଥାଏ। କିନ୍ତୁ ବାସ୍ତବରେ ଯେଉଁମାନେ ପ୍ରକଳ୍ପ ଦ୍ୱାରା ବାସଚ୍ୟୁତ ହୋଇଥାନ୍ତି ସେମାନେ କିଛି ଉପକୃତ ନ ହୋଇ ବାସଚ୍ୟୁତ ହୋଇ ନଥିବା ବ୍ୟକ୍ତି ହିଁ ବେଶୀ ଲାଭବାନ ହୁଅନ୍ତି।

ଏକ ପକ୍ଷରେ କହିବାକୁ ଗଲେ ଭାରତର ବିକାଶ ପ୍ରକ୍ରିୟାର ଇତିହାସ ଗରୀବ, ଆଦିବାସୀ, ହରିଜନ, ଗିରୀଜନ ଓ ଭୂମିହୀନ ଲୋକଙ୍କ ଠାରୁ ଧନବାନ ଓ ସମ୍ବଳବାନ ଲୋକଙ୍କ ପାଖକୁ ଅର୍ଥନୈତିକ କ୍ଷମତାର ହସ୍ତାନ୍ତରକୁ ହିଁ ବୁଝାଇଥାଏ। ବିଭିନ୍ନ ପ୍ରକଳ୍ପମାନଙ୍କରୁ ଉଦ୍‌ବାସ୍ତୁ ହେଉଥିବା ଲୋକମାନଙ୍କ ଉପରେ ନାନାପ୍ରକାର ଆଲୋଚନା ପର୍ଯ୍ୟାଲୋଚନା ହେଉଛି କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଯେ କେଉଁ ପ୍ରକଳ୍ପରୁ କେତେ ଜଣ ଉତ୍‌ଥାନ ହେଲେ ଓ କେତେ ଜଣ ଥଇଥାନ ନିମନ୍ତେ ଅପେକ୍ଷାରତ ତାହାର କିଛି ପ୍ରକୃତ ହିସାବ ସରକାରୀ କିମ୍ବା ବେସରକାରୀ ସଂସ୍ଥାଙ୍କ ନିକଟରେ ନାହିଁ।

ପୂର୍ବରୁ କୁହାଯାଇଛି ଯେ ଓଡ଼ିଶା ଏକ ଖଣି ଖାଦାନର ରାଜ୍ୟ। ସ୍ୱାଧିନତା ପରବର୍ତ୍ତୀ ସମୟରେ ଓଡ଼ିଶା ସରକାର ସରକାରୀ ତଥା ବେସରକାରୀ ପ୍ରଚେଷ୍ଟାରେ ବ୍ୟାପକ ଭାବରେ ଖଣିଜ ଦ୍ରବ୍ୟ ଉତ୍ତୋଳନର ଭାର ନେଇଛନ୍ତି। ଏଥି ନିମନ୍ତେ ଶହ ଶହ କୋଇଲା ଖଣି. ଚୂନପଥର ଖଣି, ପଥର ଖାଦାନ, ବକ୍‌ସାଇଟ, ଡୋଲାମାଇଟ୍, ଲୁହାପଥର ଆଦି ଖଣି କାର୍ଯ୍ୟକାରୀ ହେଉଛି। ଏହି ସବୁ ଖଣି ଖାଦାନ ଗୁଡିକ ନିଘଞ୍ଚ ଜଙ୍ଗଲ ଅଞ୍ଚଳରେ ରହିଛି ଯେଉଁଠାରେ କି ଆଦିବାସୀ ହରିଜନ ଗିରୀଜନ ଆଦି ଶ୍ରେଣୀର ଲୋକମାନେ ବସବାସ କରିଥାନ୍ତି। ସେମାନେ ପୁରୁଷ ପୁରୁଷଧରି ଜଙ୍ଗଲ ସଫା କରି ଜମି ତିଆରି କରି ରହୁଥିଲେ ମଧ ବ୍ୟକ୍ତିଗତ ସମ୍ପଦ ମାଲିକାନା ନେଇ ବିଶେଷ ସଚେତନ ନ ଥିବାରୁ ସେମାନଙ୍କ ଘରଡିହ ଓ ଚାଷଜମି ଗୁଡିକର ପଟ୍ଟା ସେମାନଙ୍କ ପାଖରେ ନ ଥାଏ। ତେଣୁ ସରକାର ବିଭିନ୍ନ ଖଣି ଖାଦାନ ନିମନ୍ତେ ସେ ସବୁ ସ୍ଥାନ ଲିଜ୍ ଦେବାବେଳେ ବାଧ ହୋଇ ମୂଳ ଆଦିବାସୀ ମାନଙ୍କୁ ସେ ସବୁ ଜମିରୁ ବେଦଖଲ କରିଥାନ୍ତି। ସେମାନଙ୍କ ପାଖରେ ଜମିର ପଟ୍ଟା ନ ଥିବାରୁ କ୍ଷତିପୂରଣ ଦିଆଯାଏ ନାହିଁ କିମ୍ବା ବ୍ୟକ୍ତିଗତ ଭାବରେ ଆଲୋଚନା ମାଧମରେ ଯେତେବେଳେ ଯତ୍ କିଞ୍ଚିତ୍ ଅନୁକମ୍ପାମୂଳକ କ୍ଷତିପୂରଣ ଦିଆଯାଏ ତାହା ଅତି ନଗଣ୍ୟ। ସମୟ ସମୟରେ ଆଦିବାସୀମାନେ ବିଭିନ୍ନ ପ୍ରକଳ୍ପ ଦ୍ୱାରା ଯଦିବା ପ୍ରତ୍ୟକ୍ଷ ଭାବରେ ଉତ୍‌ଖାତ୍ ହୁଅନ୍ତି ନାହିଁ କିନ୍ତୁ ପରୋକ୍ଷ ଭାବରେ ନିର୍ଭର କରୁଥିବା ବଣ ଜଙ୍ଗଲ ଫଳଫୁଲ ଜାଳେଣୀ ଆଦିରୁ ସେମାନେ ବଞ୍ଚିତ ହୁଅନ୍ତି। ଯଦିଓ ଆଦିମ କାଳରୁ ଜଙ୍ଗଲ ହିଁ

ସେମାନଙ୍କ ସମ୍ବଳ ତଥାପି ସେଗୁଡିକ ସରକାର ନିଜ ସମ୍ପତ୍ତି କହି ତା ଉପରେ କୌଣସି କ୍ଷତିପୂରଣ ଦିଅନ୍ତି ନାହିଁ । ବରଂ ଜନସାଧାରଣଙ୍କୁ ଏସବୁ ସମ୍ପତ୍ତିର ଜବରଦଖଲକାରୀ ବୋଲି ଆଖ୍ୟାୟିତ କରନ୍ତି ।

ଓଡ଼ିଶା ସରକାରଙ୍କ ହିସାବ ଅନୁସାରେ ୧୯୮୯ ମସିହାରେ ସାରା ଓଡ଼ିଶାରେ ୪୩୧ଟି ଖଣି କାର୍ଯ୍ୟ କରୁଥିଲା । ସେମାନଙ୍କ ମଧ୍ୟରୁ ୩୩ଟି ମାଙ୍ଗାନିଜ ଖଣି, ୫୮ଟି ଲୁହାପଥର ଖଣି, ୪୧ଟି କ୍ରୋମାଇଟ୍ ଖଣି, ୮ଟି ଚୂନପଥର ଖଣି, ୨୨ଟି ଡୋଲାମାଇଟ୍ ଖଣି, ୧୮ଟି କୋଇଲା ଖଣି, ୬୮ଟି ଗ୍ରାଫାଇଟ୍ ଖଣି, ୧ଟି ସୀସା ଖଣି, ୩୦ଟି ଫାୟାର ମୃତ୍ତିକା, ୯ଟି ଚିନା ମୃତ୍ତିକା, ୩ଟି ବକ୍ସାଇଟ୍ ଖଣି ଓ ୨୮ଟି କ୍ୱାର୍ଜାଇଟ୍ ଖଣି ଏହା ମଧ୍ୟରେ ଅନ୍ତର୍ଗତ । ଏହା ରାଜ୍ୟର ୧ଲକ୍ଷ ୪ହଜାର ୨ଶହ ୪୮ ହେକ୍ଟର ଜମି ଅଧିଗ୍ରହଣ କରିଛି ।

ଓଡ଼ିଶାର ଝାରସୁଗୁଡା ଜିଲ୍ଲାର ବ୍ରଜରାଜନଗର ଓ ଅନୁଗୁଳ ଜିଲ୍ଲାର ତାଳଚେରଠାରେ କୋଇଲା ମିଳୁଥିଲା । ଏବେ ସୁନ୍ଦରଗଡ ଜିଲ୍ଲାର ଗୋପାଳପୁରଠାରେ ଏକ ନୂତନ କୋଇଲା ଖଣିର ସନ୍ଧାନ ମିଳିଛି । ଏସବୁ କୋଇଲା ଖାଦାନ ମହାନଦୀ କୋଲ ଫିଲ୍ଡ ଲିମିଟେଡ ଦ୍ୱାରା ପରିଚାଳିତ । ଏମ୍.ସି.ଏଲ୍. ତାଳଚେର ଅଞ୍ଚଳରୁ ୧୯୯୪ ସୁଦ୍ଧା ୪୨୧୪.୩୮ ହେକ୍ଟର ଜମି ଅଧିଗ୍ରହଣ ନିମନ୍ତେ ନୋଟିସ୍ ଦେଇଥିଲେ । ଏଥିମଧ୍ୟରୁ ୨୪୨୩.୬୦ ହେକ୍ଟର ଚାଷ ଜମି, ୧୨୫୦.୯୦ ହେକ୍ଟର ଜଙ୍ଗଲ ଜମି ଓ ୫୩୯.୯୮ ହେକ୍ଟର ସରକାରୀ ଜମି । ତାଳଚେରର ୪ଟି ଭୂତଳ ଖଣି ଦ୍ୱାରା ୨୩ଟି ଗ୍ରାମ ଓ ୫ଟି ଖୋଲା ମୁହଁ ଖଣି ଦ୍ୱାରା ୩୮ଟି ଗ୍ରାମ ବିସ୍ଥାପନର ଶିକାର ହୋଇଛନ୍ତି । ସେହିପରି ଇବ୍ ଉପତ୍ୟକାରେ ୫ଟି ଖୋଲା ମୁହଁ ଖଣି ୧୨ଟି ଗ୍ରାମରୁ ଲୋକଙ୍କୁ ବିସ୍ଥାପନ କରିବ । ଏଥିନିମନ୍ତେ ଏମ୍.ସି.ଏଲ୍. ୧୬୮୨୦.୬୦ହେକ୍ଟର ଜମି ଅଧିଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି ।

କୋଇଲା ପରି ବକ୍ସାଇଟ୍ ଏକ ବହୁ ମୂଲ୍ୟବାନ ଖଣି ପଥର । ଯେଉଁଥିରୁ କି ଆଲୁମିନିୟମ ତିଆରି ହୁଏ । ଭାରତରେ ଥିବା ଶତକଡା ୨୦ଭାଗ ବକ୍ସାଇଟ୍ କେବଳ ଓଡ଼ିଶାର ସମ୍ବଲପୁର, ବଲାଙ୍ଗୀର, କୋରାପୁଟ, କଳାହାଣ୍ଡି, ରାୟଗଡାରେ ହିଁ ରହିଛି । ଏହା ସାରା ବିଶ୍ୱରେ ଥିବା ବକ୍ସାଇଟ୍ର ଶତକଡା ୧୩ଭାଗ । ବକ୍ସାଇଟ୍ର ଗୁରୁତ୍ୱ ଉପଲବ୍ଧି କରି ୧୯୮୧ ମସିହାରେ ସରକାରୀ ଉଦ୍ୟୋଗରେ ନାସନାଲ ଆଲୁମିନିୟମ କର୍ପୋରେସନ୍ ବା ନାଲକୋ ଆରମ୍ଭ କରାଗଲା । ଏହି କମ୍ପାନୀ କୋରାପୁଟ ଜିଲ୍ଲାର

ପଞ୍ଚପଟମାଳୀ ପାହାଡରୁ ବକ୍ସାଇଟ୍ ଉତ୍ତୋଳନ କରି ଦାମନଯୋଡିଠାରେ ଥିବା ଆଲୁମିନିୟମ ରିଫାଇନାରୀକୁ ପଠାଉଛି । ସେଠାରେ ଏକ ଆଲମିନା ହୋଇ କିଛି ଅଂଶ ଅନୁଗୁଳଠାରେ ଥିବା ଆଲୁମିନିୟମ୍ କାରଖାନାକୁ ଆସି ଆଲୁମିନିୟମ୍ ଖଣ୍ଡ ତିଆରି ହେଉଛି ଓ ଅନ୍ୟ କିଛି ଅଂଶ ଫ୍ରାନ୍ସକୁ ରପ୍ତାନୀ ହେଉଛି । ଦାମନଯୋଡି କାରଖାନା ଖଣି ନିମନ୍ତେ ୧୦୫୮ ଏକର ଜମି ଅଧିଗ୍ରହଣ କରାଯାଇଛି ଏବଂ ୨୬ଟି ଗ୍ରାମର ଲୋକଙ୍କୁ ଉଦ୍‌ବାସ୍ତୁ କରିଛି ଓ ୫୯୧ଟି ପରିବାର ଭିଟାମାଟି ଛାଡିଛନ୍ତି । ଏମାନଙ୍କ ମଧ୍ୟରେ ୫୫ଭାଗ ହେଉଛନ୍ତି ଆଦିବାସୀ ଓ ଦଳିତ ସମ୍ପ୍ରଦାୟର ।

କେବଳ ନାଲକୋ ନୁହେଁ ଆହୁରି ଅନେକ ଦେଶୀ ଓ ବିଦେଶୀ କମ୍ପାନୀ ବକ୍ସାଇଟ୍ ଉତ୍ତୋଳନ କରିବା ନିମନ୍ତେ ସରକାରଙ୍କ ଠାରୁ ଲାଇସେନ୍ସ ପ୍ରାପ୍ତ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ଆଲକୋଆ ବା ଆଲୁମିନିୟମ କମ୍ପାନୀ ଅଫ୍ ଆମେରିକା, ଏଲ୍ ଏଣ୍ଡ ଟି, ବାଲକୋ ଏବଂ ଷ୍ଟେରଲାଇଟ୍ ଆଦି । ସ୍ଥାନୀୟ ଆଦିବାସୀମାନଙ୍କ ପ୍ରକଳ୍ପ ବିରୁଦ୍ଧରେ ଦୃଢ଼ ଜନ ଆନ୍ଦୋଳନକୁ ନେଇ ଉପରୋକ୍ତ କମ୍ପାନୀଗୁଡିକ କାର୍ଯ୍ୟ ଆରମ୍ଭ କରିନାହାନ୍ତି କିନ୍ତୁ ସେ ଅଞ୍ଚଳରେ ବକ୍ସାଇଟ୍ ଉତ୍ତୋଳନ ହେଲେ ହଜାର ହଜାର ଆଦିବାସୀ ପରିବାର ଉଦ୍‌ବାସ୍ତୁ ହୋଇ ଦାଣ୍ଡର ଭିକାରୀ ହେବେ ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ଖଣି ଖାଦାନ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଅବସ୍ଥାପିତ ଥିବାରୁ ହଜାର ହଜାର ଆଦିବାସୀ ସେମାନଙ୍କ ଜମିରୁ ଉଦ୍‌ବାସ୍ତୁ ହୋଇଛନ୍ତି । ଏସବୁ ଖଣି ଖାଦାନ ସହିତ ଆଧୁନିକ ସଭ୍ୟତାର ମନ୍ଦିର ସ୍ୱରୂପ ବଡ ବଡ ନଦୀବନ୍ଧ ଯୋଜନା ଯଥା ହୀରାକୁଦ, ରେଙ୍ଗାଲୀ, ମନ୍ଦିରା, ଗୋହୀରା, ଇନ୍ଦ୍ରାବତୀ ଓ ରାଉରକେଲା, ରାଜଗାଙ୍ଗପୁର, ବ୍ରଜରାଜନଗର ଆଦିର ଇସ୍ପାତ ଲୌହ କାରଖାନା, ସିମେଣ୍ଟ କାରଖାନା, କାଗଜ କଳ, ତାପଜ ବିଦ୍ୟୁତ କେନ୍ଦ୍ର ଆଦି ମଧ୍ୟ ଲୋକଙ୍କୁ ସେମାନଙ୍କ ଭିଟାମାଟିରୁ ଉତ୍‌ଖାତ୍ କରିଛି । ୧୯୫୦ ରୁ ୧୯୯୩ ମସିହା ମଧ୍ୟରେ ସାରା ଓଡ଼ିଶାରେ ୧୪୪୨ଟି ଗ୍ରାମରୁ ୮୧,୧୭୨ଟି ପରିବାର ବିଭିନ୍ନ ଖଣି ଖାଦାନ, କଳ କାରଖାନା ଓ ନଦୀ ବନ୍ଧ ଆଦିରୁ ଉଦ୍‌ବାସ୍ତୁ ହୋଇଥିଲେ ଓ ସେ ସବୁ ପ୍ରକଳ୍ପ ନିମନ୍ତେ ୬୨୨୬୪ହେକ୍ଟର ଜମି ଅଧିଗ୍ରହଣ କରାଯାଇଥିଲା । ହେଲେ ଥଇଥାନ ଓ ପୁନଃ ବସତି ସେପରି କିଛି ଆଖିଦୃଶିଆ ହୋଇନାହିଁ । ମୋଟ ଉପରେ ୧୦% ଭାଗ ଲୋକ କ୍ଷତିପୂରଣ ପାଇଛନ୍ତି ଓ ଥଇଥାନ ହୋଇଛନ୍ତି । କିନ୍ତୁ ଅନ୍ୟମାନଙ୍କ ବିଷୟରେ ପ୍ରଚଳିତ ବିକାଶ ଧାରା ନୀରବ ରହିଛି ।

ଅର୍ଥନୀତିରେ ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ଯୁଗ ଆରମ୍ଭ ହେବା ଦିନଠାରୁ ଓଡ଼ିଶା ଯେହେତୁ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଆହୁରି ଅନେକ ଘରୋଇ ଦେଶୀୟ ତଥା ବୈଦେଶିକ କମ୍ପାନି ଓଡ଼ିଶାରେ ଖଣିଖାଦାନ ଓ କାରଖାନା ବସାଇବା ନିମନ୍ତେ ଲାଳାୟିତ ଅଛିନ୍ତି । ସେମାନଙ୍କ ମଧ୍ୟରେ ଅଛନ୍ତି ସେପା, ଟିସ୍କୋ, ଇନଡାଲ, ହିନ୍ଡାଲକୋ, ଏଲ.ଏଣ୍ଡ.ଟି, ଓସ୍ୱାଲ ଇତ୍ୟାଦି ଏହିସବୁ କମ୍ପାନୀମାନଙ୍କ ନିମନ୍ତେ ଆହୁରି ଅନେକ ଖଣି ଖାଦାନ, ବିଦ୍ୟୁତ୍ ପ୍ରକଳ୍ପ, ରାସ୍ତାଘାଟ, ଜଳଯୋଗାଣ ପ୍ରକଳ୍ପ ତିଆରି ହେବ ଓ ଅଧିକରୁ ଅଧିକ ଲୋକ ସେମାନଙ୍କ ଭିଟାମାଟି ଛାଡିବା ପାଇଁ ବାଧ ହେବେ । ତେଣୁ ପ୍ରଚଳିତ ବିକାଶଧାରା ଅବ୍ୟାହତ ରହିଲେ ଅଳ୍ପ କିଛି ଲୋକଙ୍କ ସବୁସୁବିଧା ନିମନ୍ତେ ବହୁତ ଲୋକ ଉଦ୍‌ବାସ୍ତୁ ହୋଇ ସର୍ବହରା ଜୀବନ ଯାପନ କରିବେ ।

## ଖଣି ବିସ୍ଥାପିତ ନା ଯାଯାବର:

ହୀରାକୁଦ ବନ୍ଧ ଯୋଜନାରେ ବାସଚ୍ୟୁତ ପରିବାରମାନେ ଇବ୍ ନଦୀର ଅବବାହିକାରେ ବସବାସ କରୁଥିଲେ । ପରବର୍ତ୍ତୀ ସମୟରେ ବନହରପାଲିରେ ତାପଜ ବିଦ୍ୟୁତ କେନ୍ଦ୍ର ପ୍ରତିଷ୍ଠା କରାଯିବାପରେ ହୀରାକୁଦ ବନ୍ଧରୁ ବାସଚ୍ୟୁତ ହୋଇଥିବା ପରିବାରକୁ ପୁଣି ବାସଚ୍ୟୁତ ହେବାକୁ ପଡିଲା । ସେହିପରି ଝାରସୁଗୁଡା ଜିଲ୍ଲାର ଲଖନପୁର ତହସିଲର ଘନାମାଲ ଗ୍ରାମବାସୀଙ୍କୁ ଏମ୍.ସି.ଏଲ ଅତ୍ୟନ୍ତ ଅମାନବୀୟ ଭାବରେ ବୁଲଡୋଜର ଆଣି ସମ୍ପୂର୍ଣ୍ଣ ଗ୍ରାମକୁ ମାଟିରେ ମିଶାଇଦେଲା । ଦର୍ଜିପାଲି, ବନହରପାଲି, ବାଞ୍ଜିପାଲି, ଖୁଣ୍ଡମହୁଲ ଗ୍ରାମର ଅଧିକାଂଶ ଅଧିବାସୀ ୨ ଥର ଉଦ୍‌ବାସ୍ତୁ ହୋଇଛନ୍ତି । ଏବେ ଏମ୍.ସି.ଏଲ ଏମାନଙ୍କୁ ପୁଣିଥରେ ବାସଚ୍ୟୁତ କରିବାକୁ ବସିଛି । ଏବେ ପ୍ରଶ୍ନ ଉଠୁଛି ଗୋଟିଏ ପରିବାର କେତେଥର ଦେଶର ବିକଶ ନିମନ୍ତେ ଶହୀଦ ହେବେ ।

ଏବେ ସମ୍ବଲପୁର ଜିଲ୍ଲାର ରେଙ୍ଗାଲୀ ବ୍ଲକର ଖଣ୍ଡା ଗ୍ରାମରେ ଇଣ୍ଡଲ କମ୍ପାନୀ ୧୮୮ ଏକର ୪୨ ଡିସିମିଲ୍ ଜମି ଲିଜ୍ ସୂତ୍ରରେ ସରକାରଙ୍କଠାରୁ ଅଧିଗ୍ରହଣ କରିଛି । ଏହିସବୁ ଜମି ହୀରାକୁଦ ବାସଚ୍ୟୁତ ପରିବାରକୁ ଦିଆଯାଇଥିଲା ଓ ସରକାରଙ୍କ ତରଫରୁ ଲୋକଙ୍କୁ ଡିସି ପଟା ମିଳିଛି । କିନ୍ତୁ ଡିସି ପଟା ଥିଲେ ମଧ୍ୟ ଇଣ୍ଡଲ ଉକ୍ତ ଜମିକୁ ପତ୍ରା ଜଙ୍ଗଲ କହି କ୍ଷତିପୂରଣ ଦେବାକୁ ମନା କରୁଛି । ତେଣୁ ଏହାଦ୍ୱାରା କିଛି ଲୋକ ବିସ୍ଥାପିତ ହୋଇ ଠିକ୍ ଭାବରେ ଥଇଥାନ ହୋଇ ନଥିବା ବେଳେ ପୁଣି ଥରେ ବାସଚ୍ୟୁତ ହେବାକୁ ପଡୁଛି । ସେମାନେ ହାଇକୋର୍ଟର ଦ୍ୱାରସ୍ଥ ହୋଇ ଖର୍ଚ୍ଚାନ୍ତ ହେଉଛନ୍ତି ।

ଦେଖିବାକୁ ଗଲେ ବାସଚ୍ୟୁତଙ୍କ ପାଇଁ ସେପରି କିଛି ଜାତୀୟ ଥଇଥାନ ଆଇନ ନାହିଁ। ତେଣୁ ଏମ୍.ସି.ଏଲ ତାର ନିଜର ଥଇଥାନ ବ୍ୟବସ୍ଥା କରୁଥିବାବେଳେ ତାପଜ ବିଦ୍ୟୁତ କେନ୍ଦ୍ର ତାଙ୍କର ନିଜର ବ୍ୟବସ୍ଥା କାର୍ଯ୍ୟକାରୀ କରୁଛନ୍ତି । ଯେହେତୁ ସେଗୁଡ଼ିକ ଆଇନ ନୁହେଁ, କୋର୍ଟ କଚେରୀରେ ସେଗୁଡ଼ିକୁ ପ୍ରଶ୍ନ କରାଯାଇ ପାରିବ ନାହିଁ ।

ବସୁନ୍ଧରା କୁଲଡା କୋଇଲା ଖଣି ସ୍ଥାନୀୟ ୧୪ଟି ଗ୍ରାମକୁ ଅଧିଗ୍ରହଣ କରିଥିଲେ ସୁଦ୍ଧା ଉପଯୁକ୍ତ କ୍ଷତିପୂରଣ ମିଳିନାହିଁ କି ଏମ୍.ସି.ଏଲ. କର୍ତ୍ତୃପକ୍ଷ ଭିଟି ପରିବାରଙ୍କୁ ନିଯୁକ୍ତି ଦେଇନାହାଁନ୍ତି ! ଭୂମିହୀନ ଲୋକଙ୍କୁ ସରକାରଙ୍କ ତରଫରୁ ଯୋଉଁ ଜମି ମିଳିଛି ତାର ମଧ୍ୟ କ୍ଷତିପୂରଣ ଦିଆଯାଉନାହିଁ । ତେଣୁ ଏପ୍ରିଲ ୨୦୦୩ ମସିହାରେ ମାଣିତେଶ୍ୱରୀ କୋଇଲା ଖଣି ଆଞ୍ଚଳିକ ବାସଚ୍ୟୁତ ସଂଗ୍ରାମ ସମିତି ଡାକରାରେ ୧୪ଟି ଗ୍ରାମର ୫୦୦ ମହିଳା ସମେତ ପ୍ରାୟ ୨୦୦୦ଲୋକ ମହାନଦୀ କୋଲ ଫିଲଡ୍ ଓ ବସୁନ୍ଧରା କ୍ଷେତ୍ରରେ ପ୍ରବେଶ ପଥକୁ ଦୀର୍ଘ ୧୨ଘଣ୍ଟା ଧରି ଅବରୋଧ କରିଥିଲେ । *(ସମାଜ:୦୬.୦୪.୨୦୦୩) ।*

## ଖଣି ଓ ପରିବେଶ:

ଖଣି ଖାଦାନ ଗୁଡ଼ିକ ଯେ ସ୍ଥାନୀୟ ଲୋକଙ୍କୁ ବାସଚ୍ୟୁତ କରି ଜମି, ଜଳ, ଜଙ୍ଗଲ ଉପରେ ଥିବା ଅଧିକାରରୁ ବଞ୍ଚିତ କରୁଛି ତାହା ନୁହେଁ ବରଂ ଖଣିଗୁଡ଼ିକ ପର୍ଯ୍ୟାବରଣ ପ୍ରଦୂଷଣରେ ପ୍ରମୁଖ ଭୂମିକା ଗ୍ରହଣ କରୁଛି । ଭାରତ ତଥା ଓଡ଼ିଶାରେ ଏପରି କୌଣସି ଖଣି ନାହିଁ ଯାହାକି ସ୍ଥାନୀୟ ପରିବେଶକୁ ଧ୍ୱଂସାଭିମୁଖୀ ନ କରିଛି । ଇବ୍ ଉପତ୍ୟକା ଅଞ୍ଚଳରେ ଗଢ଼ି ଉଠିଥିବା ଏମ୍.ସି.ଏଲ. ର କୋଇଲା ଖଣି, ବ୍ରଜରାଜନଗର କାଗଜକଳ ଇବ୍ ଥର୍ମାଲ ଷ୍ଟେସନ ଆଦି ଅଞ୍ଚଳର ପରିବେଶ କିପରି ଭାବରେ ପ୍ରଭାବିତ ହେଉଛି ସେ କଥା ଆଖିରେ ନଦେଖିଲେ ବିଶ୍ୱାସ କରିପାରିବେ ନାହିଁ । ସେହିପରି ତାଳଚେର ଖଣି ଓ ଶିଳ୍ପାଞ୍ଚଳ ଅତିମାତ୍ରାରେ ପ୍ରଦୂଷିତ ଅଞ୍ଚଳଭାବରେ କୁଖ୍ୟାତି ଅର୍ଜନ କରିସାରିଛି । ଜିଓଲୋଜିକାଲ ସର୍ଭେ ଅଫ୍ ଇଣ୍ଡିଆର ଏକ ଅନୁଧ୍ୟାନରୁ ଜଣାପଡ଼ିଛି ଯେ ହୀରାକୁଦ, ବ୍ରଜରାଜନଗର, ତାଳଚେର, ରେଙ୍ଗାଲୀ ଅଞ୍ଚଳ ଏକ ଭୂମିକମ୍ପ ପ୍ରବଣ ଅଞ୍ଚଳ ମଧ୍ୟରେ ରହିଛି ଓ ଖଣି ଖାଦାନ ତଥା ନଦୀ ବନ୍ଧ ଯୋଜନା ଗୁଡ଼ିକ ଏହି ଅଞ୍ଚଳରେ ଥିବାରୁ ଭୂମିକମ୍ପର ସମ୍ଭାବନା ଅଧିକ ଅଛି ଏବଂ ସାମାନ୍ୟ ଧରଣର ଭୂମିକମ୍ପରେ ବ୍ୟାପକ କ୍ଷୟକ୍ଷତିର ସମ୍ଭାବନା ରହିଛି । ତେଣୁ ଏହାକୁ ଆଖି ଆଗରେ ରଖି ଅଚଳ ତଥା ପୁରୁଣା

ଖଣି ଗୁଡିକରେ ପ୍ରଚୁର ବାଲି ଭର୍ତ୍ତି କରି ବନ୍ଦ କରିଦେବା ଉଚିତ୍ । କିନ୍ତୁ ଏମ୍.ସି.ଏଲ.ର ଖାମଖିଆଲି ନୀତି ନେଇ ଖଣି ଗୁଡିକରେ ବାଲି ଭର୍ତ୍ତି କରାଯାଉନାହିଁ । ଏହାଛଡା ପ୍ରତିଦିନ ଶହ ଶହ ଡମ୍ପର ଯିବା ଆସିବା କରିବା ଦ୍ୱାରା କୋଇଲାଗୁଣ୍ଡ ଉଡୁଥିବାରୁ ସ୍ଥାନୀୟ ଲୋକମାନେ ନାନା ପ୍ରକାର ଜଳରୋଗ, ପେଟରୋଗ ଓ ଶ୍ୱାସନଳୀ ରୋଗରେ ଆକ୍ରାନ୍ତ ହେଉଛନ୍ତି । ଏମ୍.ସି.ଏଲକୁ ବିଶ୍ୱବ୍ୟାଙ୍କ ଋଣ ଦେଉଛି ଓ ତା ସହିତ ନିର୍ଦ୍ଦେଶନାମା ମଧ୍ୟ ଦେଉଛି କିପରି ଭାବରେ ଖଣି ଅଞ୍ଚଳର ପରିବେଶକୁ ସନ୍ତୁଳିତ ରଖିବାକୁ ହେବ କିନ୍ତୁ ଖଣି କର୍ତ୍ତୃପକ୍ଷ ସେ ସବୁ ଗ୍ରହଣ କରିବାକୁ ନାରାଜ । ଖଣି ଅଞ୍ଚଳରେ ଥିବା ସମସ୍ତ କଟା, ବନ୍ଧ, ନଳକୂପ ଆଦି ପ୍ରଦୁଷିତ । ୧୯୮୨ ପରଠାରୁ ଖୋଲାମୁହଁ କୋଇଲା ଖନନ କାର୍ଯ୍ୟ, ଇବ୍ ଉପତ୍ୟକା ଝରାତାଗା, ଲୁଚିବାହାଲ, ବାଟାଟିକ୍ରା, ଅଇଲାପାଲି, କୁଜୋପାଲି, ଲାଜକୁରା, କୁନ୍ଧିଆ, ମୁଦ୍ରାପଡା ଓ ରାମପଡା ଆଦି ଅଞ୍ଚଳକୁ ବିଶେଷ ଭାବରେ ପ୍ରଦୁଷିତ କରୁଛି ।

୧୯୬୦ମସିହା ଠାରୁ ତାଳଚେର ଖୋଲାମୁହଁ କୋଇଲା ଖଣି ଯୋଗୁଁ ମଧ୍ୟ ଅନୁରୂପ ପର୍ଯ୍ୟାବରଣୀୟ ଅସନ୍ତୁଳନ, ପରିବେଶ ପ୍ରଦୂଷଣ ତଥା ଜଳ ଓ ଜନ ପ୍ରଦୂଷଣ ବୃଦ୍ଧି ପାଇଛି । କୋଇଲା ଖଣି ସହିତ ବୃହତ ତାପଜ ବିଦ୍ୟୁତ କେନ୍ଦ୍ର ଓ ନାଲକୋ ଅଞ୍ଚଳର ବାୟୁ ମଣ୍ଡଳକୁ ବେଶ୍ ଉତ୍ତପ୍ତ କରି ରଖୁଛି । କୂଅ ପୋଖରୀର ଜଳଧାରା ଶୁଖି ଯାଉଛି । କୋଇଲା ଗୁଣ୍ଡ ଜମିରେ ମିଶିବା ପରେ ଜମିର ଉର୍ବରତା ହ୍ରାସ ପାଉଛି । ଖଣି ଖାଦାନଗୁଡିକର କୁପ୍ରଭାବ ପର୍ଯ୍ୟାବରଣ ଉପରେ ପଡିଲେ ସମସ୍ତଙ୍କ ଉପରେ ନାନାଭାବରେ ପ୍ରଭାବ ପକାଇଥାଏ । ବୃକ୍ଷଲତା, ଜୀବଜନ୍ତୁ, ମନୁଷ୍ୟ, ଜଳ, ସ୍ଥଳ ଓ ଆକାଶ କେହି ପ୍ରଦୁଷଣରୁ ମୁକ୍ତ ହୋଇପାରନ୍ତି ନାହିଁ କିନ୍ତୁ ଏହା ସ୍ତ୍ରୀ ଲୋକ ତଥା ଆଦିବାସୀ, ହରିଜନମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥାଏ । ଖୋଲାମୁହଁ ଖଣିଗୁଡିକ ଅଧିକ ଜଳ ଆବଶ୍ୟକ କରିଥାନ୍ତି । ଫଳରେ ଯେଉଁଠି ଦିନେ ଅଗନାଅଗନି ବନସ୍ତ ଥିଲା ଏବେ ତାକୁ ଧ୍ୱଂସାଭିମୁଖି କରିବା ଦ୍ୱାରା ତା ଉପରେ ନିର୍ଭର କରୁଥିବା ଲୋକେ ଫଳମୂଳ, କାଠ ବାଉଁଶ ନିମନ୍ତେ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ସ୍ତ୍ରୀ ଲୋକମାନଙ୍କୁ ଜାଳେଣି ତଥା ପାନୀୟ ଜଳ ସଂଗ୍ରହ ନିମନ୍ତେ ବହୁଦୂର ଯିବାକୁ ପଡୁଛି । ବାଡି ବଗିଚାରେ ପରିବା ଚାଷ ନ ହେବାରୁ ସ୍ତ୍ରୀ ଲୋକମାନଙ୍କର ପୁଷ୍ଟିହୀନତା ଦେଖାଦେଉଛି । ତା ସହିତ ନାନାପ୍ରକାର ପ୍ରଦୁଷଣ ଦ୍ୱାରା ସେମାନଙ୍କର ଅକାଳରେ ଗର୍ଭପାତ ହେଉଛି ।

କେବଳ କୋଇଲା ଖଣି କାହିଁକି ସୁନ୍ଦରଗଡ ଜିଲ୍ଲାର କୋଇଡା, ବୀରମିତ୍ରପୁର, ପୁରୁଣାପାଣି, କେନ୍ଦୁଝର ଜିଲ୍ଲାର ଯୋଡା-ବଡବିଲ ଆଦି ଅଞ୍ଚଳର ଲୁହାଖଣି ମାନଙ୍କରେ କାର୍ଯ୍ୟରତ ମହିଳା ଶ୍ରମିକମାନଙ୍କ ପୁଷ୍ଟିହୀନତା, କଠିନ ପରିଶ୍ରମ ଓ ପରିବେଶ ପ୍ରଦୂଷଣ ନେଇ ବାରମ୍ବାର ଗର୍ଭପାତ, ବିକଳାଙ୍ଗ ଶିଶୁ ଜନ୍ମ, ଶିଶୁ ମୃତ୍ୟୁହାର ଅଧିକ ହେବା ନିତିଦିନିଆ ଘଟଣାରେ ପରିଣତ ହୋଇଛି । ସୁକିନ୍ଦା ଉପତ୍ୟକାରେ ଚାଲିଥିବା ଖଣିଗୁଡିକ ପ୍ରଦୂଷଣ ନିୟନ୍ତ୍ରଣ ବ୍ୟବସ୍ଥାକୁ ବେଖାତିର କରି ଚାଲିଛନ୍ତି । ଓଡ଼ିଶା ଖଣି ନିଗମ ଅଧିନରେ ଥିବା ଖଣି ହେଉକି ଘରୋଇ ମାଲିକାନାରେ ପରିଚାଳିତ ଖଣି ହେଉ ଉଭୟେ ପରିବେଶ ପ୍ରଦୂଷଣ ନିମନ୍ତେ ଦାୟୀ । ରାଜ୍ୟ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ ସେମାନଙ୍କ ବିରୁଦ୍ଧରେ ଯେଉଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା କଥା କରୁନାହାଁନ୍ତି । ସୁକିନ୍ଦା ଉପତ୍ୟାକାରେ ବଡ ବଡ ୮ଟି ଖଣି ଜଳ ଓ ବାୟୁ ପ୍ରଦୂଷଣ କରିବା କଥା କେନ୍ଦ୍ର ପରିବେଶ ରାଷ୍ଟ୍ରମନ୍ତ୍ରୀ ଦୀଲିପ ସିଂହ ଜୁଦେଓ ସ୍ୱୀକାର କରିଛନ୍ତି । *(ସମାଜ ୧୨.୦୪.୨୦୦୩)* ।

ତାଳଚେର ପରି ଝାରସୁଗୁଡା ଜିଲ୍ଲାର ଇବ୍ ଉପତ୍ୟକା ରାଜ୍ୟର ସର୍ବାଧିକ ପ୍ରଦୂଷଣ ଅଞ୍ଚଳ ଭାବେ ଜଣାଶୁଣା । ହୀରାକୁଦ ନଦୀ ବନ୍ଧ ଯୋଜନା, ଓରିଏଣ୍ଟ କାଗଜ କଳ ଓ କୋଇଲା ଖଣି, ଟାଟା ରିଫ୍ରାକ୍ଟରୀ, ଏମ୍.ସି.ଏଲର ଲିଲାରୀ, ଲଖନପୁର, ବନହରପାଲିଠାରେ କୋଇଲାଭିତ୍ତିକ ପରିବେଶକୁ ବିଷମୟ କରିଛି । ଫଳରେ କୂଅ ପୋଖରୀରୁ ପାଣି ଶୁଖି ଯାଉଛି, ଜଙ୍ଗଲ ଧ୍ୱଂସ ହେଉଛି । ଝାରସୁଗୁଡା ଜିଲ୍ଲା ଓଡ଼ିଶାର ସବୁଠାରୁ ଅଧିକ ତାପମାତ୍ରା ଅଞ୍ଚଳରେ ପରିଣତ ହୋଇଛି ।

## ବଡବଙ୍ଗା ପଞ୍ଚାୟତ ସୁରକ୍ଷା ସମିତି ଓ ସର୍ଗିପାଲି ସୀସା ଖଣି ପ୍ରକଳ୍ପ:

ହିନ୍ଦୁସ୍ଥାନ ଜିଙ୍କ ଲିମିଟେଡ ସୁନ୍ଦରଗଡ ଜିଲ୍ଲାର ସର୍ଗିପାଲିଠାରେ ସୀସା ଖଣି ପ୍ରକଳ୍ପ ୧୯୮୦ରେ ଉତ୍ପାଦନ ଆରମ୍ଭ କରିଥିଲା । କିନ୍ତୁ ଉକ୍ତ ଖଣିକୁ ୨୦୦୨ରୁ ସମ୍ପୂର୍ଣ୍ଣ ବନ୍ଦ କରି କର୍ମଚାରୀମାନଙ୍କୁ ଭି.ଆର.ଏସ୍. ଦେଇ ଦେଲେଣି । ଉକ୍ତ ଖଣି ସ୍ଥାନୀୟ ଜଙ୍ଗଲକୁ ନଷ୍ଟ କରି ପର୍ଯ୍ୟାବରଣକୁ ସମ୍ପୂର୍ଣ୍ଣ ଭାବେ ପ୍ରଦୂଷିତ କରିଛି । ବିଭିନ୍ନ ବିଷାକ୍ତ ରାସାୟନିକ ପଦାର୍ଥମିଶ୍ରିତ ଖାଦାନର ମଇଳାପାଣି ଓ ସୀସାଗୁଣ୍ଡ ପ୍ରଭୃତିକୁ ୫୦୦ ହେକ୍ଟର ପରିମିତ ଡ୍ୟାମରେ ଗଚ୍ଛିତ କରାଯାଇଛି । ସମ୍ପ୍ରତି ଡ୍ୟାମରୁ ବିଷାକ୍ତ ବାଷ୍ପ ନିର୍ଗତ ହେଉଛି । ଗାଈଗୋରୁ ଡ୍ୟାମର ପାଣି ପିଇ ମୃତ୍ୟୁମୁଖରେ ପଡୁଛନ୍ତି । ସବୁଠାରୁ ବିପଦପୂର୍ଣ୍ଣ କଥା ହେଲା ଖଦାନକୁ କମ୍ପାନୀ ତରଫରୁ ଫିଲିଙ୍ଗ କରାନଯାଇ କେବଳ ଉପରୁ ସିଲ୍

କରିଦିଆଯାଇଥିବାରୁ ଭବିଷ୍ୟତ ଦୈବୀ, ଦୁର୍ଘଟଣାକୁ ନେଇ ଅଞ୍ଚଳରେ ଆତଙ୍କ ଦେଖାଦେଇଛି । ଇବ୍ ପରିବେଶ ନାମକ ଏକ ବେସରକାରୀ ସଂସ୍ଥା ଦ୍ୱାରା ଏକ ସର୍ଭେ ରିପୋର୍ଟରେ ସମଗ୍ର ପଶ୍ଚିମାଞ୍ଚଳ ଭୂମିକମ୍ପ ପ୍ରବଣ ଅଞ୍ଚଳ ଭାବରେ ଦର୍ଶାଯାଇଛି ଓ ସର୍ଗିପାଲି ଏହି ଭୂମିକମ୍ପ ପ୍ରବଣ ଅଞ୍ଚଳ ମଧ୍ୟରେ ରହିଛି । ତେଣୁ ବଡବଙ୍ଗା ପଞ୍ଚାୟତ ସୁରକ୍ଷା ସମିତି ତରଫରୁ ଉକ୍ତ ସୀସା ଖଣିର ସିଲ୍ ଖୋଲାଯାଇ ଏହାର ପେକିଂ ବା ବାଲି ଭର୍ତ୍ତି କରାଯିବାକୁ ଦାବୀ ହେଉଛି । ଖଣି ଭିତରେ ଥିବା ବିଷାକ୍ତ ପାଣିକୁ ବିଶୋଧନ କରି ଲୋକଙ୍କ ବ୍ୟବହାରରେ ଲଗାଯିବାକୁ ମଧ୍ୟ ଦାବୀ ହେଉଛି । କିନ୍ତୁ ଖଣି ମନ୍ତ୍ରଣାଳୟ ଏ ବାବଦରେ ନୀରବ ରହୁଛନ୍ତି । (ସମାଜ ୦୯.୦୫.୨୦୦୩)

## ପ୍ରାକୃତିକ ସମ୍ପଦ ସୁରକ୍ଷା ଆନ୍ଦୋଳନ:

ଓଡ଼ିଶାରେ ଯେତେସବୁ ନଦୀବନ୍ଧ, କଳକାରଖାନା, ଖଣି ଖାଦାନ, ଅଭୟାରଣ୍ୟ ଆଦି ଯୋଜନା କାର୍ଯ୍ୟକାରୀ ହେଉଛି ସେ ସବୁ ବହୁ ଲୋକଙ୍କୁ ସେମାନଙ୍କ ଭିଟାମାଟିରୁ ବିସ୍ଥାପିତ କରିଛି । ସରକାର ବାରମ୍ବାର କହିଆସିଛନ୍ତି ଯେ ଦେଶର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ କିଛି ଲୋକଙ୍କୁ ତ୍ୟାଗ ସ୍ୱୀକାର କରିବାକୁ ପଡିବ । କିନ୍ତୁ ସାଧାରଣ ଜନତା ଯେଉଁମାନେ ଭିଟାମାଟି ହରାଉଛନ୍ତି ଏ ପ୍ରକାର ଧର୍ମବାଣୀ ଶୁଣିବାକୁ ଇଚ୍ଛା ପ୍ରକାଶ କରୁନାହାଁନ୍ତି । ବରଂ ସେମାନେ ବର୍ତ୍ତମାନ ପ୍ରଚଳିତ ବିକାଶ ପଦ୍ଧତିକୁ ପ୍ରଶ୍ନ କରିବାରେ ଲାଗିଛନ୍ତି ଏବଂ ବିକଳ୍ପ ସରକାରଙ୍କ ହାତରେ ଉପସ୍ଥାପିତ କରୁଛନ୍ତି । ଆନ୍ଦୋଳନର ତୀବ୍ରତା, ଲୋକଙ୍କ ଅଂଶଗ୍ରହଣ, ନେତୃତ୍ୱ, ଆନ୍ଦୋଳନର ଲକ୍ଷ୍ୟ, ଲୋକଙ୍କ ରାଜନୈତିକ ସଚେତନତା ଆଦି ନେଇ କେଉଁଠି ଆନ୍ଦୋଳନ ମାଧ୍ୟମରେ ପ୍ରକଳ୍ପ ବନ୍ଦ ହୋଇଯାଉଛି ତ କେଉଁଠି ଆନ୍ଦୋଳନ ତା ଲକ୍ଷ୍ୟ ସ୍ଥାନରେ ପହଁଞ୍ଚିପାରୁନାହିଁ । କିନ୍ତୁ ଦିନୁ ଦିନ ପ୍ରତିବାଦର ସ୍ୱର ତୀବ୍ରତର ହେବାର ଲାଗିଛି ।

## କାଶୀପୁର ଜନ ଆନ୍ଦୋଳନ:

ବିଗତ ୧୦ବର୍ଷ ଧରି କାଶୀପୁର ଅଞ୍ଚଳରେ ବ୍ୟାପକ ଜନ ଆନ୍ଦୋଳନ ଚାଲୁଛି । ବକ୍ସାଇଟ୍ ଉତ୍ତୋଳନ ଓ ଆଲୁମିନିୟମ କାରଖାନା ନେଇ ଭାରତରେ ସାମ୍ବିଧାନିକ ବ୍ୟବସ୍ଥା ଅଛି ଯେ ଆଦିବାସୀ ଅନୁସୂଚୀତ ଅଞ୍ଚଳରେ ଜମି, ଜଳ, ଜଙ୍ଗଲ ତଥା ଖଣିକୁ ଅଣ ଆଦିବାସୀମାନଙ୍କୁ ହସ୍ତାନ୍ତର କରାଯାଇପାରିବ ନାହିଁ । ପୁନଶ୍ଚ ୧୯୯୬ ମସିହା ଡିସେମ୍ବର ୨୪ ତାରିଖରେ ପାଶ୍ ହୋଇଥିବା ପଞ୍ଚାୟତ ସମ୍ପ୍ରସାରଣ ଆଇନ ଅନୁସାରେ

ଗ୍ରାମସଭା ଆଇନ ଅନୁସାରେ ଗ୍ରାମସଭାର ବିନା ଅନୁମତିରେ କୌଣସି ପ୍ରାକୃତିକ ସମ୍ପଦ ହସ୍ତାନ୍ତର କରାଯାଇପାରିବ ନାହିଁ । ୧୯୯୭ ମସିହାରେ ମାନ୍ୟବର ସୁପ୍ରିମକୋର୍ଟ ମଧ୍ୟ ରାୟ ଦେଇଛନ୍ତି ଯେ ଆଦିବାସୀ ଅଞ୍ଚଳର ଜମି, ଜଙ୍ଗଲ ଓ ଖଣି ଆଦି ଅଣ ଆଦିବାସୀମାନଙ୍କୁ ହସ୍ତାନ୍ତର କରାଯାଇପାରିବ ନାହିଁ । ଏସବୁ ସାମ୍ବିଧାନିକ ବ୍ୟବସ୍ଥା ସତ୍ତ୍ୱେ ଦକ୍ଷିଣ ପଶ୍ଚିମ ଓଡ଼ିଶାର ସମସ୍ତ ପାହାଡ ପର୍ବତ ଅଞ୍ଚଳରେ ଗଚ୍ଛିତ ଥିବା ସମସ୍ତ ବକ୍ସାଇଟକୁ ବହୁଦେଶୀ ବିଦେଶୀ କମ୍ପାନୀମାନଙ୍କୁ ଲିଜ୍ ଦିଆଯାଇଛି । ସେମାନେ ବକ୍ସାଇଟ୍ ଉତ୍ତୋଳନ କରି ପ୍ରଥମେ ଆଲୁମିନା କାରଖାନା ବସାଇବେ ଓ ଏହି ଆଲୁମିନାକୁ ବିଦେଶକୁ ରପ୍ତାନୀ କରିବେ ଏବଂ ଅଳ୍ପ କିଛି ଅଂଶ ଆଲୁମିନା ନେଇ ଆଲୁମିନିୟମ କାରଖାନା ବସାଇବେ ।

## ବିରୋଧର କାରଣ:

ଦକ୍ଷିଣ ପଶ୍ଚିମ ଓଡ଼ିଶାର ବିଭିନ୍ନ ବକ୍ସାଇଟ୍ ଖଣିଗୁଡିକୁ ଦେଶୀ ଓ ବିଦେଶୀମାନଙ୍କୁ ଲିଜ୍ ଦେବାକୁ ନେଇ ସ୍ଥାନୀୟ ଅଧିବାସୀମାନଙ୍କ ମଧ୍ୟରେ ଘୋର ଅସନ୍ତୋଷ ଦେଖାଯାଇଛି । ସେମାନେ ସ୍ଥାନୀୟ ଭାବରେ ବିଭିନ୍ନ ଗଣସଂଗଠନମାନେ ଗଠନ କରି ପ୍ରସ୍ତାବିତ ପ୍ରକଳ୍ପଗୁଡିକୁ ବିରୋଧ କରିବାରେ ଲାଗିଛନ୍ତି । ସେମାନେ ଦେଖିଛନ୍ତି ଯେ କୋରାପୁଟ ଜିଲ୍ଲାର ଦାମନଯୋଡିରୁ ବିସ୍ଥାପିତ ହୋଇଥିବା ସେମାନଙ୍କ ସ୍ୱଜନମାନେ ଆଜିସୁଦ୍ଧା ଉପଯୁକ୍ତ ଭାବରେ ଥଇଥାନ ହୋଇନାହାଁନ୍ତି । ସ୍ଥାନୀୟ ପାହାଡ ପର୍ବତ, ବଣ ଜଙ୍ଗଲ ଗୁଡିକରୁ ମିଳିଥିବା ବିଭିନ୍ନ ପ୍ରକାରର ଫଳଫୁଲ, ମୂଳ, କନ୍ଦା, ଜଙ୍ଗଲଜାତ ଦ୍ରବ୍ୟ, ମହୁଝୁଣା, ବେତଝାଡୁ, ହରିଡା, ଅଁଳା, ବାହାଡା, ମହୁଲ ନାନାପ୍ରକାର ଔଷଧୀୟ ବୃକ୍ଷ, ଜୀବଜନ୍ତୁ ସେମାନଙ୍କ ଜୀବିକା ନିର୍ବାହର ଉତ୍ସ ସ୍ୱରୂପ କାମ କରୁଛି । ଅତିକମ୍‌ରେ ବର୍ଷର ୪ ମାସର ଜୀବିକା ନିର୍ବାହର ଉତ୍ସ ସ୍ୱରୂପ କାମ କରୁଛି । ଏପରି ସ୍ଥାନରେ ବକ୍ସାଇଟ୍ ଉତ୍ତୋଳନ କଲେ ଓ ଆଲୁମିନା, ଆଲୁମିନିୟମ କାରଖାନା ବସାଇଲେ ହୁଏତ ସରକାର ବୈଦେଶିକ ମୁଦ୍ରା ଅର୍ଜନ କରିପାରନ୍ତି । ଠିକାଦାର, ରାଜନେତା, କୁଜିନେତା ଅମଲାତନ୍ତ୍ର ସତ୍ ଓ ଅସତ୍ ଉପାୟରେ ରାତାରାତି ଧନୀ ହୋଇଯାଇପାରନ୍ତି କିନ୍ତୁ ସ୍ଥାନୀୟ ଲୋକେ ନିଜର ଭିଟାମାଟି ହରାଇ ଦାଣର ଭିକାରୀ ହେବେ । କାରଖାନା ଓ ଖଣି ଗୁଡିକ ଭୂତଳ ଜଳକୁ ଦୂଷିତ କରିବ । ରେଡମଡ ନାମକ (ଲାଲ ମୃତ୍ତିକା) ବିଷାକ୍ତ ଆବର୍ଜନାର ପାହାଡ ସୃଷ୍ଟି ହେବ । ବାୟୁ ମଣ୍ଡଳରେ ଆଲୁମିନା, ଆଲୁମିନିୟମ, ଫ୍ଲୋରାଇଡ, ଫ୍ଲୋରିନ୍ ଗୁଣ୍ଡ ଓ



କାର୍ବନ ଅକ୍ସାଇଡ୍ ଆଦି ନାନା ପ୍ରକାର ବିଷାକ୍ତ ବାଷ୍ପ ପ୍ରବେଶ କରି ସ୍ଥାନୀୟ ଜନସାଧାରଣଙ୍କୁ ପଙ୍ଗୁ କରିଦେବ।

ବକ୍ସାଇଟ୍ ଖଣିଗୁଡ଼ିକ ବିରୁଦ୍ଧରେ ଜନ ଆନ୍ଦୋଳନ ଯେତିକି ତୀବ୍ର ହେଉଛି ସ୍ଥାନୀୟ ପୋଲିସ୍, ରାଜ୍ୟ ସରକାର ଓ ଅମଲାତନ୍ତ୍ର ସେତିକି ଭୟଭୀତ ହୋଇ ଆକ୍ରମଣାତ୍ମକ ପନ୍ଥା ଅବଲମ୍ବନ କରି ଆନ୍ଦୋଳନକୁ ଭାଙ୍ଗି କମ୍ପାନୀକୁ କାର୍ଯ୍ୟ କରିବାରେ ସୁଯୋଗ ଯୋଗାଇ ଦେବାକୁ ତତ୍ପର ହେଉଛନ୍ତି। କିନ୍ତୁ ଭାରତବର୍ଷରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବା ଆଦିବାସୀ ଆଜି ପୁଣି ଥରେ ସଚେତନ ହୋଇଉଠିଛି। ତା ଅଞ୍ଚଳର ପ୍ରାକୃତିକ ସମ୍ପଦକୁ ବିଦେଶୀ କମ୍ପାନୀ ହାତରେ ଟେକି ଦେଇ ଚୁପ୍ ହୋଇ ବସି ରହିବନି। ତେଣୁ ବିକାଶ ନାମରେ ଯେଉଁ ରାଜନୈତିକ ଦଳମାନେ ଓ ଦେଶଦ୍ରୋହୀ ଅମଲାମାନେ, ଆଲକନ, ହାଇଡ୍ରୋ, ଆଲକୋଆ, ଏଲ.ଏଣ୍ଡ.ଟି. ଆଦି ବିଦେଶୀ କମ୍ପାନୀମାନଙ୍କୁ ଓଡ଼ିଶାର ଜମି, ଜଳ ଓ ଜଙ୍ଗଲକୁ ଲୁଣ୍ଠନ ନିମନ୍ତେ ଡାକି ଆଣୁଛନ୍ତି ସେମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବ। ତେଣୁ ସେମାନେ ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦ ଓ ବାଫିଲିମାଳି ସୁରକ୍ଷା ସମିତି ସଂଗଠନ ଗଢ଼ି ସେହି ମାଧ୍ୟମରେ ଆନ୍ଦୋଳନକୁ ତୀବ୍ର କରିଛନ୍ତି। କିନ୍ତୁ ଉକ୍ତ ଅନୁଷ୍ଠାନ ଗୁଡ଼ିକର ସାଂଗଠନିକ ଦକ୍ଷତାକୁ ନ୍ୟୁନ କରି ଦେଖିବା ନିମନ୍ତେ ସରକାର, ଅମଲାତନ୍ତ୍ର ଓ ରାଜନୈତିକ ଦଳମାନେ ଆନ୍ଦୋଳନ ସବୁ ଏନ୍‌ଜିଓ ବିଶେଷକରି ଅଗ୍ରଗାମୀ ନାମକ ଏନ୍.ଜି.ଓ.ର ମତାଣ ବା ଉସକାଇବା ଦ୍ୱାରା ହେଉଛି ବୋଲି ପ୍ରଚାର କରୁଛନ୍ତି।

ତେବେ ଓଡ଼ିଶାର ବିଜେପି ବିଜେଡି ମିଳିତ ସରକାରଙ୍କର ପୋଲିସ୍ ୨୦୦୦ ମସିହା ଡିସେମ୍ବର ୧୬ତାରିଖ ଦିନ ରାୟଗଡା ଜିଲ୍ଲାର କାଶୀପୁର ବ୍ଲକର ମାଇକଞ୍ଚ ଗ୍ରାମରେ ଅମାନୁଷିକ ଆକ୍ରମଣ କରି ଦାମୋଦର ଝୋଡିଆ, ରଘୁନାଥ ଝୋଡିଆ ଓ ଅଭିଲାଷ ଝୋଡିଆ ନାମକ ୩ଜଣ ଯୁବକଙ୍କୁ ଗୁଳି କରି ହତ୍ୟା କରିଥିଲେ। ଉଦ୍ଦେଶ୍ୟ ଥିଲା ଆତଙ୍କବାଦ ଚଳାଇ ଆନ୍ଦୋଳନର ଗଳା ଚିପି କମ୍ପାନୀକୁ ସୁବିଧା ସୁଯୋଗ ଦେବା କିନ୍ତୁ ଏ ପ୍ରକାର ଦମନଲିଲା ସତ୍ତ୍ୱେ ୨୦.୧୨.୨୦୦୦ ଦିନ କାଶୀପୁର ଅଞ୍ଚଳର ଆଦିବାସୀ ପକ୍ଷରୁ ଆହ୍ୱାନ ଦିଆଯାଇଥିବା ରଫକଣା ଛକ ଚକାଜାମ ଆନ୍ଦୋଳନରେ ୮ହଜାର ଆଦିବାସୀ ଯୋଗ ଦେଇଥିଲେ। ସେହିପରି ଜାନୁୟାରୀ ୭ତାରିଖ ୨୦୦୨ରେ ପ୍ରାକୃତିକ ସମ୍ପଦ ସୁରକ୍ଷା ପରିଷଦର ଚକାଜାମ ଆନ୍ଦୋଳନ ହୋଇଥିଲା ଯେଉଁଠାରେ କି ଅନ୍ୟାନ୍ୟ ବିଷୟ ସମେତ କେବିକେ ଜିଲ୍ଲାର ସମସ୍ତ ବକ୍ସାଇଟ୍ ଖଣି ଓ କାରଖାନା ଚୁକ୍ତି ବାତିଲ କରିବା ଦାବି କରାଯାଇଥିଲା।

## ଲାଞ୍ଜିଗଡ ଓ ନିୟମଗିରି ସୁରକ୍ଷା ସମିତି:

କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡଠାରେ ଷ୍ଟେରଲାଇଟ୍ କମ୍ପାନୀ ତରଫରୁ ଏକ ଆଲୁମିନା ପ୍ଲାଣ୍ଟର ନିର୍ମାଣ ପାଇଁ ସରକାରଙ୍କ ସହିତ ଚୁକ୍ତି ହୋଇଛି । ନିକଟସ୍ଥ ନିୟମଗିରି ୧୦୭୩ ହେକ୍ଟର ବକ୍‌ସାଇଟ୍ ଖଣି ଅଞ୍ଚଳ ଏହି କମ୍ପାନୀ ଅଧିନରେ ରହିଛି । ୪୫୦୦କୋଟି ଟଙ୍କା ପୁଞ୍ଜି ନିବେଶ ମାଧମରେ ପ୍ରସ୍ତାବିତ ଏହି କାରଖାନାରେ ୨ଟି ପଞ୍ଚାୟତର ୧୨ଖଣ୍ଡ ଗ୍ରାମ କ୍ଷତିଗ୍ରସ୍ତ ହେବେ । ତେଣୁ ସ୍ଥାନୀୟ ଗ୍ରାମବାସୀମାନେ ଏ ପ୍ରକଳ୍ପକୁ ସମ୍ପୂର୍ଣ୍ଣ ବିରୋଧ କରୁଛନ୍ତି । ସେମାନେ ନିୟମଗିରି ସୁରକ୍ଷା ସମିତି ନାମକ ସଂଗଠନ ଗଠନ କରି ପ୍ରସ୍ତାବିତ ପ୍ରକଳ୍ପକୁ ବିରୋଧ କରୁଛନ୍ତି । ସଂପୃକ୍ତ ଅଞ୍ଚଳରେ ବକ୍‌ସାଇଟ୍ ଖଣି ଖୋଳା ହେଲେ ବଂଶଧାରା ନଦୀ ଯାହାକି ନିୟମଗିରି ପର୍ବତରୁ ବାହାରିଛି ତାହା ଶୁଖି ଯିବ ।

ତୀବ୍ରତର ଆନ୍ଦୋଳନ ନେଇ ଷ୍ଟେରେଲାଇଟ୍ କମ୍ପାନୀ ତରଫରୁ କୌଣସି କାର୍ଯ୍ୟକ୍ରମ ହୋଇପାରିନାହିଁ । ତେଣୁ ଏଥିରେ ଉତ୍‌କ୍ଷିପ୍ତ ହୋଇ କମ୍ପାନୀ ସ୍ଥାନୀୟ ପୋଲିସ୍ ପ୍ରଶାସନ ଓ ଶାସକ ଦଳର ଗୁଣ୍ଡାବାହିନୀର ସାହାଯ୍ୟରେ ଆନ୍ଦୋଳନକାରୀମାନଙ୍କୁ ମାରଧର କରିବାରେ ଲାଗିଛନ୍ତି । ଏପ୍ରିଲ ୧ ତାରିଖରେ ସମଗ୍ର ଓଡ଼ିଶା ଉତ୍କଳ ଦିବସ ପାଳନ କରୁଥିବା ସମୟରେ ସମାଜବାଦୀ ଜନ ପରିଷଦର ଓଡ଼ିଶା ଶାଖା ସଭାପତି ଲିଙ୍ଗରାଜ ଆଜାଦ, ନିୟମଗିରି ଅଞ୍ଚଳରୁ ଫେରୁଥିବା ସମୟରେ ଷ୍ଟେରେଲାଇଟ୍ ଗୁଣ୍ଡାମାନେ ତାଙ୍କୁ ନିସ୍ତୁକ ମାଡ ମାରି ଥାନାକୁ ନେଇ ଯାଇଥିଲେ ଓ ସେମାନଙ୍କ ଇଙ୍ଗିତରେ ପୋଲିସ୍ ତାଙ୍କୁ ସୁରକ୍ଷା ଦେବ କ'ଣ ଓଲଟି ଗିରିଫ କରିଥିଲେ । ସ୍ଥାନୀୟ ଗ୍ରାମବାସୀମାନେ ତାପର ଦିନ ଥାନାକୁ ଯାଇ ଆଜାଦଙ୍କୁ ମୁକ୍ତି ନିମନ୍ତେ ଦାବି କରନ୍ତେ ଷ୍ଟେରେଲାଇଟ୍‌ର ଗୁଣ୍ଡାମାନେ ସେମାନଙ୍କୁ ମଧ ନିସ୍ତୁକ ମାଡ ମାରିଥିଲେ । ଏହି ଘଟଣା ଘଟୁଥିବା ସମୟରେ ପୋଲିସ୍ ନିରବଦ୍ରଷ୍ଟା ସାଜିଥିଲେ । ୨୦୦୩ ଏପ୍ରିଲ ୭ ତାରିଖ ସମ୍ବଲପୁରର ବରେଇପାଲି ବଜାର ପ୍ରାଙ୍ଗଣରେ ଓଡ଼ିଶା ରାଜ୍ୟ କୃଷକ ସୁରକ୍ଷା ସଂଗଠନ ପକ୍ଷରୁ ଆୟୋଜିତ କୃଷକ ମହାସମାବେଶରେ ସାଥି ସରୋଜ ଏହି ଆକ୍ରମଣ ଘଟଣାକୁ ନିନ୍ଦା କରି ଷ୍ଟେରେଲାଇଟ୍ ଚୁକ୍ତି ବାତିଲ ନିମନ୍ତେ ପ୍ରସ୍ତାବ ରଖିଥିଲେ । ଏହା ସଭାରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

## ବାଲକୋ ହଟାଓ ଆନ୍ଦୋଳନ:

ବାଲକୋ ବା ଭାରତ ଆଲୁମିନିୟମ କମ୍ପାନୀ (ଯାହାକି ଏବେ ଷ୍ଟେରେଲାଇଟ୍ କମ୍ପାନୀକୁ ବିକ୍ରି କରାଯାଇଛି) ମଧପ୍ରଦେଶର ଅମରକଣ୍ଟକ ଓ ଫୁଟକା ପାହାଡରେ ଥିବା



ବକ୍ସାଇଟ୍ ଶେଷ ହୋଇଯିବା ଆଶଙ୍କାରେ ଓଡ଼ିଶାର ବଲାଙ୍ଗୀର ଓ ସମ୍ବଲପୁର ଜିଲ୍ଲା ସନ୍ନିକଟ ଗନ୍ଧମାର୍ଦ୍ଧନ ପର୍ବତକୁ ୯.୬ କିଲୋମିଟର ପର୍ଯ୍ୟନ୍ତ ଲିଜ୍ ନେଇଥିଲା । ପ୍ରକାଶ ଯୋଗ୍ୟ ଯେ ଗନ୍ଧମାର୍ଦ୍ଧନ ପାହାଡରେ ୨୧କୋଟି ୩୦ଲକ୍ଷ ଟନ୍ ବକ୍ସାଇଟ୍ ଗଚ୍ଛିତ ଅଛି । ବାଲକୋ ବାର୍ଷିକ ୨ଲକ୍ଷ ଟନ୍ ବକ୍ସାଇଟ୍ ଉତ୍ତୋଳନ କରି ଲିଜ୍ ୧୦ ବର୍ଷ ପର୍ଯ୍ୟନ୍ତ ପାଇ କୋରବାସ୍ଥିତ ଆଲୁମିନିୟମ କାରଖାନାକୁ ଚଳାଇ ରଖିଥାନ୍ତା । ବାଲକୋ ୧୯୮୩ ମସିହା ମଇ ମାସରୁ କାର୍ଯ୍ୟ ଆରମ୍ଭ କରିଥିଲା । ଜୁଲାଇ ୧୯୮୫ ମସିହାରେ ଡିନାମାଇଟ୍ ଫୁଟାଇ ପାହାଡ ଉପରେ ରାସ୍ତା କଲାବେଳେ ୮୦୦ବର୍ଷ ପୁରୁଣା ନୃସିଂହନାଥ ମନ୍ଦିରରେ ଫାଟ ସୃଷ୍ଟି ହେଲା ଓ ୩୦ଫୁଟ ଗରୁଡ ସ୍ତମ୍ଭ ଭାଙ୍ଗି ପଡିଲା । ଏହା ସ୍ଥାନୀୟ ଲୋକଙ୍କ ଧାର୍ମିକ ଭାବଧାରାରେ ଆଞ୍ଚ ଆଣିବାରୁ ପ୍ରଥମେ ବିଶ୍ୱହିନ୍ଦୁ ପରିଷଦ, ହରିଶଙ୍କର-ନୃସିଂହନାଥ ସୁରକ୍ଷା ସମିତି ନାମକ ଏକ ଅନୁଷ୍ଠାନ ଗଢ଼ି ଆନୁଷ୍ଠାନିକ ଭାବରେ ବାଲକୋ ବିରୁଦ୍ଧରେ ଆନ୍ଦୋଳନ କଲେ । ମର୍ଜାର କେଶରୀ ନୃସିଂହନାଥ ମନ୍ଦିରକୁ ସ୍ଥାନୀୟ ଲୋକଙ୍କ ଅତୁଟ ବିଶ୍ୱାସ ଥିଲା । ତେଣୁ ସେମାନେ ଧର୍ମଭାବନାର ପ୍ରଚାରକରି ଅତିଶୀଘ୍ର ସ୍ଥାନୀୟ ଲୋକଙ୍କୁ ବାଲକୋ ବିରୋଧି କରିପାରିଥିଲେ । ପ୍ରଥମେ ସହରୀ ମଧ୍ୟବିତ୍ତ ଶ୍ରେଣୀର ଲୋକମାନଙ୍କ ଦ୍ୱାରା ଉତ୍ସାହିତ ହୋଇ ସ୍ଥାନୀୟ ସାଧାରଣ ଲୋକେ ବାଲକୋ ବିରୁଦ୍ଧରେ ଆନ୍ଦୋଳନ କଲେ, ପରେ କିନ୍ତୁ ଆନ୍ଦୋଳନ ଯେତେବେଳେ ଯୋରସୋରରେ ଚାଲିଲା ସ୍ଥାନୀୟ ଆଦିବାସୀ, ହରିଜନ, ଗିରିଜନ, ସ୍ତ୍ରୀ ପୁରୁଷ ସମସ୍ତେ ଆନ୍ଦୋଳନ ମଧ୍ୟକୁ ଚାଲିଆସିଲେ । ୧୯୮୫ ମସିହାରେ ଗନ୍ଧମାର୍ଦ୍ଧନ ସୁରକ୍ଷା ପରିଷଦ ଗଠନ କରାଗଲା । ଏହା ମାଧ୍ୟମରେ ଆନ୍ଦୋଳନକୁ ତୀବ୍ର କରାଗଲା । ଆନ୍ଦୋଳନକାରୀମାନେ ବର୍ତ୍ତମାନ ଧାର୍ମିକ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଯେ ବାଲକୋକୁ ବିରୋଧ କଲେ ତାହା ନୁହେଁ ସେମାନେ ଏହାକୁ ଜୀବନ, ଜୀବିକା ଓ ପରିବେଶ ଆନ୍ଦୋଳନ ସହିତ ଯୋଡିଲେ । ଗନ୍ଧମାର୍ଦ୍ଧନ ପର୍ବତରେ ଥିବା ବୃକ୍ଷଲତା, ଦୁର୍ଲଭ ବନୌଷଧି, ଫଳମୂଳ ଖଣିଜଦ୍ରବ୍ୟ, ଝରଣା ଆଦି ନାନା ପ୍ରକାର ପ୍ରାକୃତିକ ସମ୍ପଦ ସ୍ଥାନୀୟ ଲୋକଙ୍କୁ ଖାଦ୍ୟ, ଜଳ ଜାଳେଣୀ ଆଦି ଯୋଗାଇ ଆସୁଥିଲା । ୧୯୮୬ ମସିହାରେ କେନ୍ଦ୍ର ସରକାର ଗନ୍ଧମାର୍ଦ୍ଧନ ପର୍ବତର ପର୍ଯ୍ୟାବରଣ ଉପରେ ଏକ ରିପୋର୍ଟ ପ୍ରକାଶ କରି କହିଥିଲେ ଯେ, ବକ୍ସାଇଟ୍ ଛଡା ପର୍ବତ ବକ୍ଷରେ ଜଳ, ଜଙ୍ଗଲ, ମାଟି, ବନୌଷଧି ଓ ସାଂସ୍କୃତିକ ପୀଠ ଗୋଟିଏ ପରେ ଗୋଟିଏ ଅମୂଲ୍ୟ ସମ୍ପଦ । ସେମାନେ ଏହି ସମ୍ପଦର ଆନୁମାନିକ ମୂଲ୍ୟ ସେତେବେଳେ ୩୨୭ କୋଟି ଟଙ୍କା ବୋଲି କହିଥିଲେ । ଏ ସମସ୍ତ ବିଷୟକୁ ଆନ୍ଦୋଳନକାରୀମାନେ ଆୟୁଧ କରି ଯେଉଁ ଦୁର୍ବାର ଆନ୍ଦୋଳନ କଲେ ପଛୁଆ ଅଞ୍ଚଳରେ ତାର ପଟାନ୍ତର

ନାହିଁ। ୧୯୮୬ ମସିହା ଫେବୃୟାରୀ ୧୯ରୁ ଗନ୍ଧମାର୍ଦ୍ଧନ ଅଞ୍ଚଳକୁ ରାସ୍ତା ଅବରୋଧ କରି ବାଲ୍କୋକୁ କାମ କରିବା ପାଇଁ ଛଡା ଯାଇ ନଥିଲା । ଫଳରେ ୧୮୬ ସତ୍ୟାଗ୍ରହୀ ଗିରଫ ହୋଇ କାରବରଣ କଲେ । ଗର୍ବ ଓ ଗୌରବର କଥା ଯେ ଏହି ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ୮୭ଜଣ ମହିଳା ଥିଲେ । ଆନ୍ଦୋଳନର ତୀବ୍ରତାକୁ ଦେଖି ଶେଷରେ ସରକାର ବାଲକୋ ପ୍ରକଳ୍ପକୁ ବାତିଲ କରିଥିଲେ । ଲୋକଶକ୍ତି ଆଗରେ ସରକାର ମୁଣ୍ଡ ନୁଆଁଇଲେ । ବାଲକୋ ଆନ୍ଦୋଳନ ସଫଳତାର କାରଣମାନଙ୍କ ମଧ୍ୟରେ ଲୋକମାନଙ୍କ କହିବା ଅନୁସାରେ (୧) ଆନ୍ଦୋଳନକୁ ବାହାରୁ ସମର୍ଥନ ମିଳୁଥିଲା (୨) ସମ୍ବାଦପତ୍ର ଏହି ଆନ୍ଦୋଳନକୁ ଅକୁଣ୍ଠ ସମର୍ଥନ କରୁଥିଲେ (୩) ବିଭିନ୍ନ ସ୍ଥାନରେ ବୁଦ୍ଧିଜୀବୀମାନଙ୍କର ଏକ ଗୋଷ୍ଠୀ ଏହି ଆନ୍ଦୋଳନକୁ ନୈତିକ ତଥା ବୌଦ୍ଧିକ ସମର୍ଥନ ଯୋଗାଉଥିଲେ (୪) ଧାର୍ମିକ ସାଂସ୍କୃତିକ କାରଣରୁ ମଧ୍ୟବର୍ଗୀୟ ସମର୍ଥନ ମିଳିଥିଲା (୫) ତତ୍କାଳୀନ ଶାସକ କଂଗ୍ରେସର ବିରୋଧି ଥିବା ରାଜନୈତିକ ଦଳମାନେ ନିଜସ୍ୱ ଜନାଧାର। ସୃଷ୍ଟି ନିମନ୍ତେ ଆନ୍ଦୋଳନର ସମର୍ଥକ ସାଜିଥିଲେ ।

## ନାଲକୋ: ଦାମନଯୋଡି ଓ ଅନୁଗୁଳ:

ପୃଥିବୀର ସର୍ବବୃହତ ଆଲୁମିନିୟମ କମ୍ପାନୀ ନାସନାଲ ଆଲୁମିନିୟମ କମ୍ପାନୀ ବା ନାଲକୋ ୧୯୮୧ ମସିହା ଜାନୁୟାରୀ ୭ତାରିଖରେ ଏକ କମ୍ପନୀ ଭାବରେ ରେଜେଷ୍ଟ୍ରିଭୁକ୍ତ ହେଲା । ଫ୍ରାନ୍ସର ପେନିଚେରୀ କମ୍ପାନୀଠାରୁ କାରିଗରୀ କୌଶଳ ଆଣି ତତ୍‌ସହ ଭାରତ ସରକାର ଆନ୍ତର୍ଜାତିକ ବଜାରରୁ ଋଣ ତଥା ଫ୍ରାନ୍ସ ସରକାରଙ୍କ ଠାରୁ କଳକବ୍‌ଜା ଆଣି ୧୯୮୨ ମସିହାରେ କାରଖାନା କାର୍ଯ୍ୟ ଆରମ୍ଭ କରାଗଲା । ବର୍ଷକୁ ୨୪ଲକ୍ଷ ଟନ୍ ବକ୍‌ସାଇଟ୍ ଉତ୍ତୋଳନ ନିମନ୍ତେ ପଞ୍ଚପଟମାଳି ପର୍ବତକୁ ଲିଜ୍‌ରେ ନିଆଗଲା । ଦାମନଯୋଡିରେ ଆଲୁମିନା ବିଶୋଧନାଗାର ବସିଲା । ଅନୁଗୁଳରେ ସ୍ମେଲଟର ପ୍ଲାଣ୍ଟ ବସି ଆଲୁମିନିୟମ ତିଆରି ହେଲା । ୨ଶହ ମେଗାୱାଟର ଏକ ନିଜସ୍ୱ ବିଦ୍ୟୁତ କେନ୍ଦ୍ର ଅନୁଗୁଳ ନିକଟରେ ସ୍ଥାପନ କରାଗଲା । ବିଶାଖାପାଟନା ବନ୍ଦର ଦେଇ ବିଦେଶକୁ ଆଲୁମିନିୟମ ରପ୍ତାନି କରାଗଲା । ଦାମନଯୋଡିରେ ନାଲକୋ ୩୫୮୬ଏକର ସରକାରୀ ଜମି ଓ ୪୫୨୮ଏକର ବେସରକାରୀ ଜମି ଅଧିଗ୍ରହଣ କଲା । ଏଠାରେ ପ୍ରାୟତଃ ଗଣ୍ଡ, ପରଜା, କନ୍ଧ, କୋୟା ଆଦି ଆଦିବାସୀ ଶ୍ରେଣୀର ୫୨୧ଟି ପରିବାର ଭିଟାମାଟିରୁ ଉତ୍‌ଖାତ୍ ହୋଇ ଜମିବାଡି ହରାଇଲେ । ଅବଶ୍ୟ ନାଲକୋ ସେମାନଙ୍କୁ ଦାମନଯୋଡି କାରଖାନାରେ ଚାକିରୀ ଦେଲା । ଅନଲାବତୀ ଗ୍ରାମରେ

ଆଧୁନିକ ଥଇଥାନ କଲୋନୀ ତିଆରି କରିଦେଲା । ହେଲେ କିନ୍ତୁ ଲୋକଙ୍କର ଜୀବନ ଜୀବିକା ଅତ୍ୟାଧୁନିକ କଲୋନୀରେ ଜଳ ବିହୁନେ ମୀନ ସଦୃଶ ହେଲା । କେତେକ ଲୋକ କଲୋନୀ ଛାଡି ପଳାଇଲେ । ଅନୁଗୁଳର ଆଲୁମିନିୟମ ପ୍ଲାଣ୍ଟ ଓ ତାପଜ ବିଦ୍ୟୁତ କେନ୍ଦ୍ର ନିମନ୍ତେ ୪୦୦୦ ଏକର ଜମି ଅଧିଗ୍ରହଣ କରାଗଲା । ଯେଉଁ ଭିତରେ ୩୪୦୯ ଏକର ବେସରକାରୀ ଜମି ଥିଲା । ସର୍ବମୋଟ ୩୯ ଗ୍ରାମର ୪୦୪୦ ଲୋକ ଉଦ୍‌ବାସ୍ତୁ ହେଲେ । ଉଦ୍‌ବାସ୍ତୁମାନଙ୍କୁ ନାଲକୋ ପକ୍ଷରୁ ଚାକିରୀ ଯୋଗାଇ ଦେବାର ପ୍ରତିଶୃତି ଦିଆଯାଇଥିଲା । ସରକାରଙ୍କ ପ୍ରତିଶୃତିକୁ ବିଶ୍ୱାସକରି ଥଇଥାନ ଓ ଚାକିରୀ ଆଶାରେ ଲୋକମାନେ କାରଖାନା କର୍ତ୍ତୃପକ୍ଷ ଓ ସରକାରଙ୍କ ପାଖକୁ ଦୌଡାଦୌଡି ଆରମ୍ଭ କରିଥିଲେ । ହେଲେ ସେମାନଙ୍କ ଆଶା ପୂରଣ ହେଲା ନାହିଁ । ଲୋକେ କ୍ଷତିପୂରଣ ପାଇ ତାକୁ ନାନାଦି ଉପାୟରେ ଖର୍ଚ୍ଚ କରିଦେଲେ । ପରେ ଜୀବନ ଜୀବିକା ଦୁର୍ବିସହ ହେଲା । ଲୋକଙ୍କ ମଧ୍ୟରେ ହତାଶା ବଢ଼ିଲା । ହତାଶା ହିଂସା ଆଡକୁ ଗତି କରି ଧନଜୀବନ ହାନୀ ହେଲା ।

ଏପରି ଏକ ଅଭାବନୀୟ ପରିସ୍ଥିତି ୧୯୮୭ ମସିହା ଡିସେମ୍ବର ୨୩ ତାରିଖରେ ଦେଖିବାକୁ ମିଳିଥିଲା । ଅନୁଗୁଳର ଏ.ଡି.ଏମ୍. ଓ ଜିଲ୍ଲାପାଳ ଏକ ଆପତ୍ତି ଅଭିଯୋଗରେ ଶୁଣାଣି ନିମନ୍ତେ ଦିନ ଧାର୍ଯ୍ୟ କରିଥିଲେ । ଭୋଲେଶ୍ୱର ନାମକ ଜଣେ ବେକାର ଯୁବକ ଯେ କି ନାଲକୋରେ ତାର ଜମିବାଡି ହରାଇଥିଲା, ଜିଲ୍ଲାପାଳଙ୍କୁ ଖଣ୍ଡିଏ ଚାକିରୀ ନିମନ୍ତେ କାକୁତିମିନତି ହୋଇଥିଲା, ହେଲେ ଏ.ଡି.ଏମ୍ ଶ୍ରୀଯୁକ୍ତ ଗୋପବନ୍ଧୁ ପଟ୍ଟନାୟକ ତାଗ ଗୁହାରୀ ନ ଶୁଣିବାରୁ ସେ ଏକ ତୀକ୍ଷଣ୍ ଛୁରୀରେ ଏ.ଡି.ଏମ୍‌ଙ୍କୁ ଆକ୍ରମଣ କରିବାରେ ତତ୍‌କ୍ଷଣାତ ତାଙ୍କର ପ୍ରାଣବାୟୁ ଉଡିଯାଇଥିଲା । ବିଚରା ଜିଲ୍ଲାପାଳ ଏସବୁ ଦେଖି ପଳାୟନ କରିବାରୁ ଆକ୍ରମଣରୁ ବର୍ତ୍ତି ଯାଇଥିଲେ । ତେବେ କଥା ହେଲା ଯେ ଏପରି ବହୁ ଭୋଲେଶ୍ୱର ଅନୁଗୁଳରେ ଅଛନ୍ତି ଯେଉଁମାନଙ୍କ ଭିଟାମାଟି ନାଲକୋରେ ଯାଇଛି । ସେମାନେ ଦାଣ୍ଡର ଭିକାରୀ ହୋଇଛନ୍ତି । ସରକାରଙ୍କ ଥଇଥାନ ଘୋଷଣାନାମା ପାଣିର ଗାର । ଏହା ଏକ ପ୍ରତିଶୃତି ଏହାକୁ ରଖାଯାଇପାରେ ବା ଭଙ୍ଗାଯାଇପାରେ କିନ୍ତୁ କୋର୍ଟ କଚେରୀରେ ତାକୁ ନ୍ୟାୟ ନିମନ୍ତେ ପେଶ୍ କରାଯାଇନପାରେ । ଏହା ହେଉଛି ସାମଗ୍ରିକ ଅବସ୍ଥା । ଏବେ ବି ନ୍ୟାୟ ପାଇବା ଆଶାରେ ସଂଘର୍ଷ ଜାରି ରହିଛି ।

### ଶେଷ କଥା:

ଅସୁମାରୀ ଖଣିଜ ସମ୍ପଦ, ସୁଦୀର୍ଘ ନଦନଦୀ, ସୁବୀସ୍ତିର୍ଣ୍ଣ ସମୁଦ୍ରତଟ, ନିଘଞ୍ଚ ବନଜଙ୍ଗଲ ପରିପୂର୍ଣ୍ଣ ଓଡ଼ିଶା ରାଜ୍ୟ ଭାରତର ଏକ ଦରିଦ୍ରତମ ରାଜ୍ୟ ଭାବରେ ପରିଗଣିତ

ହେବା ଏକ ଆଶ୍ଚର୍ଯ୍ୟଜନକ ଘଟଣା ପରିମନେ ହୁଏ । କିନ୍ତୁ ବିକାଶର ଏତେ ବିରୋଧାଭାଷ ମଧ୍ୟରେ ଓଡ଼ିଶା ଦାରିଦ୍ର୍ୟତା ନେଇ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ବିକାଶର ପରିଭାଷା ଏଠାରେ ଭିନ୍ନ । ଓଡ଼ିଶାର ଅମଲାତନ୍ତ୍ର ଯେ କି ଶାସନକଳକୁ ନିୟନ୍ତ୍ରଣ କରୁଛି ଓ ବିଭିନ୍ନ ରାଜନୈତିକ ଦଳ ଯେଉଁମାନେ ଶାସନ ଗାଦିରେ ବସିଛନ୍ତି କିମ୍ବା ବସିବାକୁ ଅପେକ୍ଷାରତ ଅଛନ୍ତି ସେମାନଙ୍କ ବିକାଶର ପରିଭାଷା ହେଲା ରାଜ୍ୟରେ ଥିବା ଖଣି ଖାଦାନ ଗୁଡିକରେ ବୈଦେଶିକ ପୁଞ୍ଜି ତଥା ଅତ୍ୟାଧୁନିକ କାରୀଗରୀ କୌଶଳ ଅବଲମ୍ବନ କରାଯାଇ ଖଣିଜ ଦ୍ରବ୍ୟ ଉତ୍ତୋଳନ କରାଯାଉ ଓ ସେହି ଅର୍ଥରେ ଓଡ଼ିଶାର ବିକାଶ ସମ୍ଭବ ହେବ, ନୂଆ କଳକାରଖାନା ବସିବ, ନିଯୁକ୍ତି ମିଳିବ, ଆୟ ବଢ଼ିବ ଓ ଦାରିଦ୍ର୍ୟତା ଦୂର ହେବ । ରାଷ୍ଟ୍ରାୟତ୍ତ ସଂସ୍ଥା ଗୁଡିକରେ ସେମାନଙ୍କ ବିଶ୍ୱାସ ନଥାଏ । ତେଣୁ ସେମାନେ ଘରୋଇ ପୁଞ୍ଜିପତିମାନଙ୍କୁ ଖଣି ଖାଦାନଗୁଡିକୁ ଲିଜ୍ ଦେବାକୁ ଓକିଲାତି କରନ୍ତି । ବୈଦେଶିକ ପୁଞ୍ଜିପତି ମିଳିଗଲେ ଭଲ । ଯଦି ନ ମିଳନ୍ତି ତେବେ ଚୀନକୁ ବୈଦେଶିକ ପୁଞ୍ଜି ପ୍ରବାହ ହେଉଛି ବୋଲି କହି କ୍ଷୋଭ ପ୍ରକାଶ କରନ୍ତି । ପୁଞ୍ଜି ପ୍ରବାହକୁ ଆହୁରି ସରଳୀକୃତ କରିବାକୁ ଓକିଲାତି କରନ୍ତି । ଜମି, ଜଳ, ବିଦ୍ୟୁତ ନୀତିନିୟମ ଉଲଙ୍ଘନ ସବୁ କିଛିରେ ରିହାତି ଦିଆଯାଏ । ଯଦିଓ ସମ୍ବଳ ବିନିଯୋଗରେ ଓଡ଼ିଶାର ବିକାଶ ହେବବୋଲି କୁହାଯାଏ, କିନ୍ତୁ ସେଥିରେ ସେମାନଙ୍କ କିକ୍‌ବ୍ୟାକ୍ ବା ହାତ ଚିକ୍କଣ ହୁଏ । ଅତୀତରେ ଡ. ହରେକୃଷ୍ଣ ମହତାବଙ୍କର ମୁଖ୍ୟମନ୍ତ୍ରୀତ୍ୱ କାଳରେ ଜଷ୍ଟିସ୍ ସରଜୁ ପ୍ରସାଦ କମିଶନ, ମହମ୍ମଦ ସିରାଜଉଦ୍ଦିନଙ୍କୁ ଖଣି ପଟା ଦେବା ବିଷୟ ତଦନ୍ତ କମିଶନ, ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଜଷ୍ଟିସ ଖାନ୍ନା କମିଶନ ରିପୋର୍ଟ ବିଶେଷ ପ୍ରଣିଧାନ ଯୋଗ୍ୟ । ସେହିପରି ବର୍ତ୍ତମାନ ରାଜ୍ୟ ସରକାରଙ୍କର ଏକମାତ୍ର ଲାଭପ୍ରଦାନକାରୀ ଉଦ୍ୟୋଗ ଓଏମ୍‌ସିକୁ ରୁଗ୍‌ଣ କରି ଶେଷରେ ଘରୋଇ ମାଲିକାନା ହାତକୁ ଟେକି ଦେବା ପାଇଁ ଦୁର୍ନୀତିଖୋର ଅଧିକାରୀ ଓ ରାଜନୈତିକ ନେତାଙ୍କ ସଲାସୁତରାରେ ସୁପରିକଳ୍ପିତ ଅଭିସନ୍ଧି ବିଷୟ ୧୩.୪.୨୦୦୦ ତାରିଖରେ ସମ୍ବାଦ ପରିବେଷଣ କରିଥିବା ଖବର ବେଶ ପ୍ରଣିଧାନ ଯୋଗ୍ୟ । ଅମଲାତନ୍ତ୍ର ଓ ରାଜନେତାଙ୍କ ସହିତ ଯୋଗଦିଅନ୍ତି ଠିକାଦାର, ଖଣି ମାଫିଆ ଓ ମଧ୍ୟସ୍ଥିମାନେ । ସେମାନେ ଖଣି ଖାଦାନ ଲିଜ ସୂତ୍ରରେ ପାଇଥାଆନ୍ତି । ଯଦି ସେମାନେ ନ ପାଇ କୌଣସି ବୈଦେଶିକ ବହୁରାଷ୍ଟ୍ରୀୟ କମ୍ପାନୀ ଲିଜ୍ ପାଇଲା ସେମାନଙ୍କ ଦୁଃଖ କରିବାର କିଛି ନାହିଁ । କାରଣ ସେମାନେ ବୈଦେଶିକ କମ୍ପାନୀଠାରୁ ଠିକା ହେଉ ବା ଅଧିନସ୍ଥ ସହଯୋଗୀ ଭାବରେ ହେଉ ଫଳେପୁଷ୍ପେ ପାଇ ସନ୍ତୁଷ୍ଟ ରହନ୍ତି । ରାଜ୍ୟକୁ ଯେତେ ବୈଦେଶିକ ପୁଞ୍ଜି ଆସିବ ପୁଞ୍ଜିପତି, ଠିକାଦାର ବ୍ୟବସାୟୀମାନଙ୍କର ଏ ପ୍ରକାର ପରାଙ୍ଗପୁଷ୍ଟ ଚରିତ୍ର ସେତେ ତୁଷ୍ଟ ହେବ ।

ଅମଲାତନ୍ତ୍ର, ରାଜନେତା, ପୁଞ୍ଜିପତିମାନଙ୍କର ଉପରୋକ୍ତ 'ବିକାଶ' ନେଇ ଧ୍ୟାନ ଧାରଣାକୁ ସମର୍ଥନ କରି ବକ୍ତବ୍ୟ ରଖନ୍ତି ରାଜ୍ୟର ବହୁ ନାମଧେୟ/ଅନାମଧେୟ ବୁଦ୍ଧିଜୀବୀ, ଅଧ୍ୟାପକ, ଅର୍ଥନୈତିଜ୍ଞ, ସହରୀ ମଧ୍ୟବିତ୍ତଶ୍ରେଣୀ । କାରଣ ଏ ପ୍ରକ୍ରିୟା ମଧ୍ୟରେ କିଛି ଗୋଟେ ମିଳିବାର ଲୋଭଥାଏ କିମ୍ବା କିଛି ନ ମିଳିଲେ ଦୋକାନ ବଜାର କରି ବଜାର କରି ଆୟ ନିମନ୍ତେ ଏକ ପ୍ରକାର ରାସ୍ତା ଖୋଲି ଯିବା ପରି ଲାଗେ । କିନ୍ତୁ ପ୍ରଚଳିତ ପୁଞ୍ଜିଭିତ୍ତିକ ବୃହତ୍ତ ଶିଳ୍ପ, ଖଣି ଖାଦାନ ଓ ନଦୀବନ୍ଧ ପ୍ରକଳ୍ପ ଆଜି ଯେଉଁ ସର୍ବହରାଶ୍ରେଣୀ ସୃଷ୍ଟି କରିଛି ଓ ପରିବେଶଜନିତ ସମସ୍ୟା ଆଣି ଥୋଇଛି ତାର ଅବ୍ୟବସ୍ଥାବୀ ପରିଣତି ହେଉଛି ନାନା ପ୍ରକାର ବିରୋଧୀ ଜନଆନ୍ଦୋଳନ । ଏ ଆନ୍ଦୋଳନର ପୁରୋଭାଗରେ ଅଛନ୍ତି ହଜାର ହଜାର ଆଦିବାସୀ, ହରିଜନ, ମହିଳା, ଭୂମିହୀନ ଶ୍ରମିକ, ଆନ୍ଦୋଳନ ମାଧ୍ୟମରେ ସେମାନେ ଏକ ବିକଳ୍ପ ବିକାଶ ପନ୍ଥାର ଅବତାରଣା କରନ୍ତି । ପଚାଶ ଦଶକର ହୀରାକୁଦ, ସାଲନ୍ଦୀ ନଦୀବନ୍ଧ ଯୋଜନା ଓ ରାଉରକେଲା ଇସ୍ପାତ କାରଖାନା ବିରୋଧି ଆନ୍ଦୋଳନ, ୬୦ ଦଶକର ବାଲିମେଳା, ତାଳଚେର ଥର୍ମାଲ ଓ ସୁନାବେଡା ମିଗ୍ କାରଖାନା ବିରୋଧି ଆନ୍ଦୋଳନ, ୭୦ ଦଶକର ରେଙ୍ଗାଲି, ଅପରକୋଲାବ, ଅପର ଇନ୍ଦ୍ରାବତୀ ବନ୍ଧ ବିରୋଧୀ ଆନ୍ଦୋଳନ, ୮୦ ଦଶକର ଇବ୍ ଥର୍ମାଲ, ତାଳଚେର ସୁପର ଥର୍ମାଲ, ଅଙ୍ଗନଦୀ, ସୁବର୍ଣ୍ଣରେଖା ନଦୀ ଯୋଜନା ବିରୋଧି ଆନ୍ଦୋଳନ ଓ ୯୦ ଦଶକର କାଶିପୁର ସମେତ ସମସ୍ତ ପ୍ରକାର ଆଲୁମିନିୟମ ପ୍ରକଳ୍ପ ବିରୋଧି ଆନ୍ଦୋଳନ ଗୁଡିକର ଜନବିରୋଧି ବେଶ୍ ତୀବ୍ରତର ହୋଇଛି । ତତ୍ ସଙ୍ଗେ ସଙ୍ଗେ ବିକାଶକୁ ନେଇ ବିତର୍କ ବେଶ ନିର୍ଣ୍ଣାୟକ ଭୂମିକାରେ ଆସି ଅବତୀର୍ଣ୍ଣ ହୋଇଛି । ଜନଆନ୍ଦୋଳନ ଗୁଡିକ ପ୍ରାକୃତିକ ସମ୍ପଦର ପଣ୍ୟକରଣକୁ ବନ୍ଦ କରିବାକୁ ଦାବୀ କରିବା ସଙ୍ଗେ ସଙ୍ଗେ ଏକ ବିକଳ୍ପ ଅର୍ଥନୈତିକ ରାଜନୈତିକ ବିକାଶ ଢାଞ୍ଚାର ନିର୍ମାଣ କରିବାକୁ ପ୍ରୟାସ ଜାରି ରଖିଛନ୍ତି ଯାହାର ଭିତ୍ତିଭୂମି ହେଉଛି, ସାମ୍ରାଜ୍ୟବାଦୀ ବିରୋଧୀ, ଉପନିବେଶବାଦୀ ବିରୋଧୀ, ସାମନ୍ତବାଦୀ ବିରୋଧି, ପୁଞ୍ଜିବାଦ ବିରୋଧି ଗଣ ଆନ୍ଦୋଳନ । ଓଡ଼ିଶାର ଅମଲାତନ୍ତ୍ର ଶାସକ ଶ୍ରେଣୀ ଓ ଠିକାଦାର ପୁଞ୍ଜିପତି ଏପ୍ରକାର ବିକାଶ ଢାଞ୍ଚାକୁ ସାମୟିକ ଭାବରେ ବିରୋଧ କରି ପ୍ରକ୍ରିୟାକୁ ବିଳମ୍ବିତ କରିପାରନ୍ତି କିନ୍ତୁ ସେମାନେ ଏହାକୁ ସବୁଦିନ ପାଇଁ ବନ୍ଦ କରିପାରିବେ ନାହିଁ ।





# ଖଣିଜ ସମ୍ପଦ, ଜନଅଧିକାର ଓ ଓଡ଼ିଶାର ବିକାଶ

*ମାନସ ଜେନା*

ଓଡ଼ିଶାର ରାଜନୀତି, ଅର୍ଥନୀତି, ପ୍ରାକୃତିକ ପରିବେଶ ଓ ସମାଜ ବ୍ୟବସ୍ଥାରେ ଖଣିଜ ସମ୍ପଦ ଓ ଖଣିର ଏକ ପ୍ରମୁଖ ଭୂମିକା ରହିଛି । ଖଣିଜ ସମ୍ପଦ ଓ ଖଣି ଅଞ୍ଚଳର ସମସ୍ୟା କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳ ବା ଗୋଷ୍ଠୀଙ୍କୁ ବିଶେଷ ଭାବରେ ପ୍ରଭାବିତ କରୁଥିଲେ ମଧ୍ୟ ଏହା ରାଜ୍ୟର ଏକ ପ୍ରମୁଖ ସମସ୍ୟା ଓ ସାମଗ୍ରିକ ଭାବେ ରାଜ୍ୟର ରାଜନୈତିକ ଅର୍ଥନୀତି ସହ ଏହାର ବ୍ୟାପକ ସମ୍ପର୍କ ରହିଛି । ସାରାଦେଶରେ ୮୬ଟି ପ୍ରମୁଖ ଖଣିଜ ପଦାର୍ଥ ଉତ୍ତୋଳନ ହେଉଥିବା ବେଳେ ଓଡ଼ିଶା ଭୂଖଣ୍ଡରେ ମେଜର ଓ ମାଇନର ମିନେରାଲ ମିଶି ପ୍ରାୟ ୫୦ ପ୍ରକାରର ଖଣିଜ ପଦାର୍ଥ ଉତ୍ତୋଳନ ହେଉଛି । ଏହି ପ୍ରମୁଖ ଖଣିଜ ପଦାର୍ଥ ମଧ୍ୟରେ ରହିଛି କ୍ରୋମାଇଟ୍, ବକ୍ସାଇଟ୍, କୋଇଲା, ଲୁହାପଥର, ମାଙ୍ଗାନିଜ, ଗ୍ରାଫାଇଟ୍, ଚୂନପଥର, ସୀସା, କପର, ସପଷ୍ଟୋନ, ଚାଇନା କ୍ଲେ, ଡୋଲାମାଇଟ, ଫାୟାର କ୍ଲେ, ମିନେରାଲ ସ୍ୟାଣ୍ଡ, ପାଇରୋଫାଲାଇଟ, କ୍ୱାର୍ଟ, କ୍ୱାର୍ଜାଇଟ, ସୁନା, ଇଲିମାନାଇଟ ଧାତୁପଥର ଇତ୍ୟାଦି । ଏବେ ମିଳୁଥିବା ସୂଚନା ଅନୁଯାୟୀ ଅନେକ ଖଣିଜ ପଦାର୍ଥର ଉପସ୍ଥିତି ଓ ଆକଳନ କରାଯାଇପାରି ନାହିଁ । ସର୍ଭେ କାମ ଜାରି ରହିଛି ।

ତେବେ ବର୍ତ୍ତମାନର ଉପଲବ୍ଧ ତଥ୍ୟ ଅନୁସାରେ ଓଡ଼ିଶାରେ ପ୍ରାୟ ୧୮୩ ମିଲିୟନ ଟନ୍ କ୍ରୋମାଇଟ୍ ରହିଛି ଯାହା ଦେଶରେ ଗଚ୍ଛିତ ପରିମାଣର ୯୯ଭାଗ, ବକ୍ସାଇଟ୍ ୧୭୩୩ମିଲିୟନ ଟନ୍ ଯାହା ଦେଶରେ ଗଚ୍ଛିତ ପରିମାଣର ୬୦ଭାଗ, ନିକେଲ ୨୭୦ ମିଲିୟନ ଟନ୍ ଯାହା ଦେଶର ଗଚ୍ଛିତ ପରିମାଣର ୫୨ ଭାଗ, ଗ୍ରାଫାଇଟ୍ ୨ମିଲିୟନ ଟନ୍ ଯାହା ଦେଶରେ ଗଚ୍ଛିତ ପରିମାଣର ୬୫ଭାଗ, ପାଇରୋଫାଲାଇଟ ୯ମିଲିୟନ ଟନ୍ ଯାହା ଦେଶରେ ଗଚ୍ଛିତ ପରିମାଣର ୬୬ଭାଗ । ଏହା ବ୍ୟତୀତ ଦେଶର ପ୍ରାୟ ଏକ ତୃତୀୟାଂଶ କୋଇଲା, ଲୁହାପଥର, ମାଙ୍ଗାନିଜ୍ ଓ ମିନେରାଲ ସ୍ୟାଣ୍ଡ ଓଡ଼ିଶାରେ ଗଚ୍ଛିତ ରହିଛି ।

ଖଣିଜ ପଦାର୍ଥ ଦୃଷ୍ଟିରୁ ଓଡ଼ିଶାକୁ ୪ଟି ଖଣିଜ ଜୋନ ଭାବରେ ବଣ୍ଟାଯାଇପାରେ:

- କେନ୍ଦ୍ରିୟ ଓଡ଼ଶାର ମହାନଦୀ କୂଳରେ ଥିବା ଅନୁଗୁଳ, ଝାରସୁଗୁଡା, ସୁନ୍ଦରଗଡ ଇତ୍ୟାଦି କୋଇଲା କ୍ଷେତ୍ର ।
- ଯାଜପୁର ଜିଲ୍ଲାର ସୁକିନ୍ଦାଠାରୁ କେନ୍ଦୁଝର, ମୟୁରଭଞ୍ଜ, ସୁନ୍ଦରଗଡ ପର୍ଯ୍ୟନ୍ତ କ୍ରୋମ, ଲୁହାପଥର, ମାଙ୍ଗାନିଜ କ୍ଷେତ୍ର ।



☞ ଦକ୍ଷିଣ ପଶ୍ଚିମ ଓଡ଼ିଶାରେ କୋରାପୁଟ, ରାୟଗଡା, ବଲାଙ୍ଗିର, କଳାହାଣ୍ଡି ବକ୍ସାଇଟ କ୍ଷେତ୍ର ।

☞ ଉପକୂଳ ଓଡ଼ିଶାରେ ମିନେରାଲ ସ୍ୟାଣ୍ଡ କ୍ଷେତ୍ର ।

ଭୂତତ୍ତ୍ୱ ଓ ଖଣି ବିଭାଗ, ଭାରତୀୟ ଭୂତାତ୍ତ୍ୱିକ ସର୍ବେକ୍ଷଣ ଓ ଅଟୋମିକ୍ ମିନେରାଲ ଡିଭିଜନ ପକ୍ଷରୁ ହୋଇଥିବା ସର୍ଭେରେ ରାମନଗର ଓ ମହାନଦୀ ଡେଲଟାର ପୁରୀ ସମୁଦ୍ରକୂଳରେ, ପୁରୀ-ବ୍ରହ୍ମଗିରି ଅଞ୍ଚଳରେ ଭାରି ଖଣିଜ ପଦାର୍ଥ ଥିବାର ଜଣାପଡିଛି । ଏହା ବ୍ୟତୀତ ବରଗଡଠାରେ ବାଲିମିଶା ପଥର, ଗଜପତି ଓ ଫୁଲବାଣୀଠାରେ ଖଣିଜପଥର ଥିବାର ସୂଚନା ମିଳିଛି । ସୁନ୍ଦରଗଡର କୁତ୍ରାଠାରେ ବ୍ୟାପକ ଷ୍ଟୋନ ଗଚ୍ଛିତ ଥିବାର ଜଣାପଡିଛି । ହୀରା ଓ ମୂଲ୍ୟବାନ ପଥରର ସନ୍ଧାନ ନୂଆପଡା ଓ କୋରାପୁଟଠାରେ ମିଳିଛି । ସେହିପରି ବ୍ରାହ୍ମଣୀ ଉପତ୍ୟକାରେ କ୍ରୋମାଇଟ୍‌ର ମଧ୍ୟ ସନ୍ଧାନ ମିଳିଛି ।

ତାଳଚେର ଅଞ୍ଚଳର କୋଇଲା ପୂର୍ବକୁ ୭୪୮ ମିଲିୟନ ଟନ୍ ଅଧିକ କୋଇଲା ଗଚ୍ଛିତ ଥିବାର ଜଣାପଡିଛି । ସର୍ଭେକାମ ଚାଲୁ ରହିଛି ଓ ଓଡ଼ିଶାରେ ସମୁଦାୟ ଖଣିଜ ପଦାର୍ଥର ଚିତ୍ର ଧିରେ ଧିରେ ସ୍ପଷ୍ଟ ହୋଇଯିବ । ଓଡ଼ିଶାର ଲୌହ ଶିଳ୍ପ ପାଇଁ ଆବଶ୍ୟକ ତିନୋଟି ଖଣିଜ ପଦାର୍ଥର ଉତ୍ତୋଳନ ଇତିହାସ ୧୦୦ ବର୍ଷର । ଚୂନପଥର ଓ ଡୋଲାମାଇଟିର ଉତ୍ତୋଳନ ୧୮୯୮ ମସିହାରେ E.G. Barton ଙ୍କ ଦ୍ୱାରା ହୋଇଥିଲା । ୧୯୧୦ ମସିହା ବେଳକୁ ଏହା ବିସରା ଷ୍ଟୋନ ଲାଇମ କମ୍ପାନୀ ଓ ଟାଟା ଆଇରନ ଓ ଷ୍ଟିଲ କମ୍ପାନୀ ହାତକୁ ଆସିଥିଲା ।

ମାଙ୍ଗାନିଜ ୧୯୦୭ ମସିହାରେ ଓ କୋଇଲା ଖଣି ୧୮୩୭ ମସିହାରେ Lt. Kittoeଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଲୁହାପଥର କେନ୍ଦୁଝରର ୧୯୧୭ ବେଙ୍ଗଲ ଟ୍ରେଡିଙ୍ଗ କମ୍ପାନୀର ମ୍ୟାନେଜର Mr. Federick Dundasଙ୍କ ଦ୍ୱାରା ଆରମ୍ଭ ହୋଇ ପରବର୍ତ୍ତୀ ପର୍ଯ୍ୟାୟରେ M/s Bird & Coକୁ ୧୯୨୪ରେ ପ୍ରଥମେ ଲିଜ୍ ମିଳିଥିଲା ।

୩୧.୦୩.୨୦୦୦ ସୁଦ୍ଧା ଓଡ଼ିଶାରେ ୩୮୦ରୁ ଅଧିକ ଖଣି କମ୍ପାନୀ ରହିଅଛି । କେନ୍ଦ୍ର ସରକାରଙ୍କ ସେଲ୍, ନାଲକୋ, ଏମ୍.ସି.ଏଲ୍., ଆଇ.ଆର.ଏ ରାଜ୍ୟ ସରକାରଙ୍କ ଓ.ଏମ.ସି.କୁ ବାଦ ଦେଲେ ପ୍ରାୟ ୩୬୯ ଘରୋଇ ଖଣି କମ୍ପାନୀ ଉତ୍ତୋଳନ କରୁଛନ୍ତି ଓ ରାଜ୍ୟରେ ମୋଟ ୫୮୨ଟି ଲିଜ୍ ରହିଛି । (Directory of Mining Leases, Orissa, As on 31.03.2000) ।

ଖଣି କାର୍ଯ୍ୟରେ ପ୍ରାୟ ୫୪ହଜାର ସଂଗଠିତ ଖଣି ଶ୍ରମିକ କାର୍ଯ୍ୟ କରୁଥିବା ବେଳେ ସମାନ ପରିମାଣରେ ଅଣ ସଂଗଠିତ ଶ୍ରମିକ ରହିଛନ୍ତି । ଏମାନଙ୍କ ସଂଖ୍ୟା ଦ୍ରୁତ ଗତିରେ ହ୍ରାସ ପାଉଛି । ଓଡ଼ିଶାରେ ଗଲା ୨୦ ବର୍ଷ ମଧ୍ୟରେ ଖଣି ଶ୍ରମିକ ମାନଙ୍କ ସଂଖ୍ୟା ହ୍ରାସ ପାଇଛି । ଖଣିରେ ଯାନ୍ତ୍ରିକ ବ୍ୟବହାର ଓ ଶ୍ରମନୀତି ଓ ଶ୍ରମିକ କଲ୍ୟାଣକୁ ଫାଙ୍କିବା ପାଇଁ ବହୁଳ ଭାବରେ ଅଣ ସଂଗଠିତ ଶ୍ରମିକ ମାନଙ୍କ ଦ୍ୱାରା ଖଣିକାମ ଚାଲିଛି ।

କୋରାପୁଟ ଓ ସୁନ୍ଦରଗଡରେ ଥିବା ବକ୍ସାଇଟ୍ ଖଣିରେ ୧୯୯୫-୯୬ରେ ୫୪୧ଜଣ ଶ୍ରମିକ କାମ କରୁଥିବା ବେଳେ ୧୯୯୯-୨୦୦୦ରେ ୭୫୮ଜଣ ଶ୍ରମିକ କାମ କରୁଥିଲେ । ଢେଙ୍କାନାଳ, ଯାଜପୁର ଓ କେନ୍ଦୁଝର ଜିଲ୍ଲାରେ ଥିବା କ୍ରୋମାଇଟ୍ ଖଣିରେ ୧୯୯୫-୯୬ରେ ୮୮୮୬ଜଣ କାମ କରୁଥିବା ବେଳେ ୧୯୯୯-୨୦୦୦ରେ ୬୬୭୯ଜଣ କାମ କରୁଥିଲେ । ଅନୁଗୁଳ, ଝାରସୁଗୁଡା ଓ ସୁନ୍ଦରଗଡରେ ଥିବା କୋଇଲା ଖଣିରେ ୧୯୯୫-୯୬ରେ ୧୯୪୨୦ଜଣ କାମ କରୁଥିଲା ବେଳେ ୧୯୯୯-୨୦୦୦ରେ ୧୯୭୩୯ଜଣ କାମ କରୁଥିଲେ । ବରଗଡ, ବଲାଙ୍ଗିର, କେନ୍ଦୁଝର, ନୂଆପଡା, କୋରାପୁଟ, ସୁନ୍ଦରଗଡରେଥିବା ଡୋଲାମାଇଟ୍ ଏବଂ ଚୂନପଥର ଖଣିରେ ୧୯୯୫-୯୬ରେ ୮୮୪୪ଜଣ ଶ୍ରମିକ କାମ କରୁଥିଲା ବେଳେ ୧୯୯୯-୨୦୦୦ରେ ୫୬୧୬ଜଣ ଶ୍ରମିକ କାମ କରୁଥିଲେ । ଯାଜପୁର, କେନ୍ଦୁଝର, ମୟୁରଭଞ୍ଜ, ସୁନ୍ଦରଗଡ ଜିଲ୍ଲାରେ ଥିବା ଆଇରନ୍ ଓର୍ ଖଣିରେ ୧୯୯୫-୯୬ରେ ୧୪୮୫୬ଜଣ ଶ୍ରମିକ କାମ କରୁଥିଲା ବେଳେ ୧୯୯୯-୨୦୦୦ରେ ୧୨୫୮୩ଜଣ କାମ କରୁଥିଲେ । କେନ୍ଦୁଝର, ସୁନ୍ଦରଗଡ ଜିଲ୍ଲାରେ ଥିବା ମାଙ୍ଗାନିଜ୍ ଓର୍ ଖଣିରେ ୧୯୯୫-୯୬ରେ ୬୮୬୫ଜଣ ଶ୍ରମିକ କାମ କରୁଥିବା ବେଳେ ୧୯୯୯-୨୦୦୦ ମସିହାରେ ୪୦୦୦ ଜଣ ଶ୍ରମିକ କାମ କରୁଥିଲେ । ଏହିପରି ଭାବରେ ସର୍ବମୋଟ ୧୯୯୫-୯୬ ମସିହାରେ ୬୫୧୪୭ଜଣ ଖଣିଶ୍ରମିକ କାମ କରୁଥିଲା ବେଳେ ୧୯୯୯-୨୦୦୦ରେ ୫୩୨୦୯ଜଣ କାମ କରୁଥିଲେ । (Orissa Economic Survey-2002) ।

୨୦୦୧ ଓ ୨୦୦୨ରେ ଘରୋଇ ବଜାରରେ ଖଣିଜ ପଦାର୍ଥର ଦର ଗୁଡିକ ଏହିପରି ଥିଲା, ଯଥା- ବକ୍ସାଇଟ୍ ଘରୋଇ ବଜାରରେ ଟନ୍ ପ୍ରତି ୮୪୩ଟଙ୍କା ଓ ବିଦେଶ ବଜାରରେ ୬୬୦୦ଟଙ୍କାରୁ ୭୨୮୦ଟଙ୍କା ପର୍ଯ୍ୟନ୍ତ । ୧୯୯୭ ମସିହାରେ ଏହାର ରୟାଲଟି ହାର ଟନ୍ ପ୍ରତି ୪୧ଟଙ୍କା ଥିଲା । କ୍ରୋମାଇଟ୍ ଘରୋଇ ବଜାରରେ ଟନ୍ ପ୍ରତି ୪୦୧୧ଟଙ୍କା ଥିଲା ବେଳେ ବିଦେଶ ବଜାରରେ ଏହା ୫୦୦୦ରୁ ୫୮୦୦ଟଙ୍କା



ପର୍ଯ୍ୟନ୍ତ ଥିଲା । ଏହାର ରୟାଲଟି ହାର ବିକ୍ରି ଦରର ୭.୫% ଥିଲା । ମାଙ୍ଗାନିଜ୍ ଓର୍ ଘରୋଇ ବଜାରରେ ୪୮୫୦ଟଙ୍କା ଥିଲା ବେଳେ ବିଦେଶ ବଜାରରେ ଏହା ୧୧୦୦୦ରୁ ୧୩୬୮୦ଟଙ୍କା ଥିଲା । ଡୋଲାମାଇଟ୍ ଘରୋଇ ବଜାରରେ ଟନ୍ ପ୍ରତି ୨୧୪ଟଙ୍କା ଦରଥିଲା ବେଳେ ଏହାର ରୟାଲଟି ହାର ଟନ୍ ପ୍ରତି ୨୮ଟଙ୍କା ଥିଲା । ଫାୟାର କ୍ଲେ ଟନ୍ ପ୍ରତି ୧୫୦ଟଙ୍କା ଥିବାବେଳେ ଏହାର ରୟାଲଟି ହାର ଟନ୍ ପ୍ରତି ୧୭ଟଙ୍କା ଥିଲା । ଗ୍ରାନାଇଟ୍ ଘରୋଇ ବଜାରରେ ଟନ୍ ପ୍ରତି ୧୮୦୦ଟଙ୍କା ଥିଲା ବେଳେ ଏହାର ରୟାଲଟି ହାର ବିକ୍ରି ଦରର ୩% ଥିଲା । ଗ୍ରାଫାଇଟ୍ ଟନ୍ ପ୍ରତି ୧୯୪୦୦ଟଙ୍କା ଥିଲା ବେଳେ ବିଦେଶ ବଜାରରେ ୨୨୮୦୦ଟଙ୍କାରୁ ୩୦୦୦୦ପର୍ଯ୍ୟନ୍ତ ଥିଲା । ଜିପ୍‌ସମ୍ ଘରୋଇ ବଜାରରେ ଟନ୍ ପ୍ରତି ୬୦୦ଟଙ୍କା ଥିଲା । ଲାଇମ୍ ଷ୍ଟୋନ୍ ଘରୋଇ ବଜାରରେ ଟନ୍ ପ୍ରତି ଏହାର ଦର ୨୮୩ଟଙ୍କା ଥିଲା । ମିକା ଟନ୍ ପ୍ରତି ଘରୋଇ ବଜାରରେ ୮୪ଟଙ୍କା ଥିଲାବେଳେ ବିଦେଶ ବଜାରରେ ୯୬୦୦ରୁ ୧୨୦୦୦ଟଙ୍କା ପର୍ଯ୍ୟନ୍ତ ଥିଲା । ଏହାର ରୟାଲଟି ହାର ୧୯୯୭ ମସିହାରେ ବିକ୍ରି ଦରର ୪%ଥିଲା ।

୨୦୦୧-୦୨ସୁଦ୍ଧା ଓଡ଼ିଶାରେ ଉତ୍ପାଦିତ ହେଉଥିବା ଖଣିଜ ପଦାର୍ଥର ମୂଲ୍ୟ ଏହିପରିଥିଲା ଯଥାକ୍ରମେ, ବକ୍‌ସାଇଟ୍ ୩୬୦୪୬୩୫ଟନ୍ କୁ ୮୦,୭୫,୬୨,୦୦୦ଟଙ୍କା ଥିଲା । କ୍ରୋମାଇଟ୍ ୧୭୯୨୩୩୮ଟନ୍ କୁ ୩,୩୯,୧୯,୮୯,୦୦୦ଟଙ୍କା ଥିଲା । ଆଇରନ୍ ଓର୍ ୧୬୨୦୮ କୁ ୩,୩୯,୭୧,୨୩,୦୦୦ଟଙ୍କା ଥିଲା । ମାଙ୍ଗାନିଜ୍ ୫୨୮୪୧୬ଟନ୍ କୁ ୫୬,୭୮,୨୯,୦୦୦ଟଙ୍କା ଥିଲା । ଡୋଲାମାଇଟ୍ ୧୧୩୮୬୮୮ଟନ୍‌କୁ ୨୫,୯୩,୨୮,୦୦୦ଟଙ୍କା ଥିଲା । ଫାୟାର କ୍ଲେ ୩୭୩୨୨୫ଟନ୍ କୁ୧,୦୬,୦୫,୦୦୦ ଟଙ୍କା ଥିଲା । ଗ୍ରାଫାଇଟ୍ ୪୨୫୪୩ଟନ୍ କୁ ୧,୪୭,୪୧,୦୦୦ଟଙ୍କା ଥିଲା । ଲାଇମ୍‌ଷ୍ଟୋନ୍ ୨୧୪୯ଟନ୍ କୁ ୫୦,୯୦,୭୮,୦୦୦ଟଙ୍କା ଥିଲା । ସେହିପରି କୋଇଲା ୪୭୮୦୫ଟନ୍ କୁ ୧,୮୫,୩୧,୧୩,୦୦୦ଟଙ୍କା ଥିଲା ଓ ମୋଟ ଲଘୁ ଖଣିଜ ଦ୍ରବ୍ୟର ମୂଲ୍ୟ ୪୪,୮୩,୪୮,୦୦୦ଟଙ୍କା ଥିଲା । (IBM, Nagpur, 2002) ।

ବର୍ତ୍ତମାନ ସୁଦ୍ଧା ଆମେ ଯେତିକି ଖଣିଜ ଉତ୍ତୋଳନ କରିସାରିଲେଣି ତାର ଲାଭ କେତେ ହୋଇଛି ଓ ରାଜ୍ୟବାସୀ କିଭଳି ଭାବେ ଉପକାର ପାଉଛନ୍ତି ତାର ଏକ ଆକଳନ ହେବା ଦରକାର । ଓଡ଼ଶାର ପ୍ରମୁଖ ଖଣିଜ ସମ୍ପଦ ଉତ୍ତୋଳନ କରୁଥିବା ୩ଟି ବୃହତ୍ତମ

କମ୍ପାନୀ ନାଲକୋ, ସେଲ୍, ଏମ.ସି.ଏଲ. କେନ୍ଦ୍ରସରକାରଙ୍କର । ଓଡ଼ିଶାର ଏକମାତ୍ର ସରକାରୀ ଉଦ୍ୟୋଗ ହେଉଛି ଓ.ଏମ୍.ସି. ଓ ଅନ୍ୟସମସ୍ତ ଘରୋଇ କମ୍ପାନୀ ମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କୁ ଛାଡି ଦେଲେ ଅନ୍ୟ ସମସ୍ତ ଓଡ଼ିଶା ବାହାରର । କେନ୍ଦ୍ରସରକାର, ରାଜ୍ୟସରକାର ଓ ସ୍ଥାନୀୟ କର୍ତ୍ତୃପକ୍ଷ ବିଭିନ୍ନ ପ୍ରକାରର ରୟାଲ୍‌ଟି ଓ କର ଆଦି ଆଦାୟ କରୁଛନ୍ତି । ସେଥିରେ ଓଡ଼ିଶାକୁ କେତେ ମିଳୁଛି ଓ ଓଡ଼ିଶା ମଧ୍ୟରେ ସ୍ଥାନୀୟ ଲୋକଙ୍କୁ କେତେ ମିଳୁଛି ଓ ଏହାର ବ୍ୟବହାର କିଭଳି ଭାବେ ହେଉଛି ତା ବିଷୟରେ ଜନସାଧାରଣ ଜାଣିବା ଦରକାର ।

ଓଡ଼ିଶାର ନନ୍‌ଟ୍ୟାକ୍ସ ରେଭିନ୍ୟୁର ପାଖାପାଖି ୫୪ଭାଗ ଖଣି କ୍ଷେତ୍ରରୁ ଆସୁଛି । ୨୦୦୧-୦୨ରେ ଏହା ମୋଟ ୩୭୬.୪୫କୋଟି ଥିଲା । କିନ୍ତୁ ଆମେ ଯେତିକି ଦେଉଛେ ସେଇ ତୁଳନାରେ ପାଉନାହୁଁ । କାରଣ ଖଣିଜ ସମ୍ପଦର ମାଲିକ କେନ୍ଦ୍ର ସରକାରଙ୍କର ମାଇନ୍‌ସ ଆଣ୍ଡ ମିନେରାଲ ରେଗୁଲେସନ୍ ଆଣ୍ଡ ଡେଭେଲପ୍‌ମେଣ୍ଟ ଆକ୍ଟ- ୧୯୫୭ ଅନୁସାରେ ଖଣି ଖନନ ପାଇଁ କେନ୍ଦ୍ରର ଅନୁମତି ଆବଶ୍ୟକ ଓ ଖଣି ସଂକ୍ରାନ୍ତୀୟ ସମସ୍ତ ନିଷ୍ପତ୍ତି କେନ୍ଦ୍ର ସରକାରଙ୍କର ।

କେନ୍ଦ୍ରସରକାର ଖଣି ରୟାଲଟି, ସେସ୍ ଆଦି ନିର୍ଦ୍ଧାରଣ କରୁଛନ୍ତି । ଅନେକ ଅସାଧୁ କମ୍ପାନୀ ଯାହା ଖୋଲାଯାଉଛି ତାର ସଠିକ୍ ହିସାବ ଦେଉନାହାଁନ୍ତି ଓ ଖଣିଜ ପଦାର୍ଥ ଚୋରାରେ ବିକ୍ରି ହେବା କଥା ପ୍ରତିଦିନ ସମ୍ବାଦପତ୍ରରେ ପ୍ରକାଶ ପାଉଛି ।

ଅନୁସୂଚିତ ଅଞ୍ଚଳ ପାଇଁ ବିଶେଷ ବ୍ୟବସ୍ଥା ରହିଥିଲେ ମଧ୍ୟ ସୁପ୍ରିମକୋର୍ଟର ଆଦେଶ ସତ୍ତ୍ୱେ ଏଯାଏ ସିଡ୍ୟୁଲ୍‌ଡ ଏରିଆରେ କମ୍ପାନୀମାନଙ୍କ ଠାରୁ ଲାଭର ଏକ ଅଂଶ ଆଦାୟ କରାଯାଇ ପାରୁନାହିଁ । ବହୁ ପ୍ରକାରର କର ରହିଛି ଯାହା ସରକାର ଠିକ୍ ଭାବେ ଆଦାୟ କରିପାରୁ ନାହାଁନ୍ତି । ବରଂ ରାଜ୍ୟ ପାଣ୍ଠିରୁ କମ୍ପାନୀ ମାନଙ୍କୁ ସୁଯୋଗ ଦେବା ପାଇଁ ଜମି, ରାସ୍ତାଘାଟ, ବିଦ୍ୟୁତ ଓ ପାଣିର ବ୍ୟବସ୍ଥା କରି ଦିଆଯାଉଛି । ଓଡ଼ିଶାରେ କେନ୍ଦ୍ରସରକାରଙ୍କ ସମସ୍ତ ଉଦ୍ୟୋଗରୁ ଶହ ଶହ କୋଟି ଟଙ୍କା ଲାଭ ହେଉଥିଲା ବେଳେ କୌଣସି ସରକାରୀ କମ୍ପାନୀ ବା ଘରୋଇ କମ୍ପାନୀ ମାନଙ୍କର କୌଣସି ବିକାଶ ମୂଳକ କାମରେ ଯୋଗଦାନ ନାହିଁ । ଏପରିକି ସ୍ଥାନୀୟ ଉନ୍ନୟନ ପାଣ୍ଠି ଗୁଡିକ ମଧ୍ୟ ସ୍ଥାନୀୟ ଲୋକଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ, ଗମନାଗମନ ଆଦିରେ ଖର୍ଚ୍ଚ କରିବା ପରିବର୍ତ୍ତେ, ବିଳାସବ୍ୟସନ କାର୍ଯ୍ୟକ୍ରମରେ ତାହା ଅନ୍ୟ ଅଞ୍ଚଳରେ ଖର୍ଚ୍ଚ କରାଯାଉଛି ।

ଶିମିଳିଗୁଡା, ତାଳଚେର, ଲକ୍ଷ୍ମଣପୁରରେ ଲୋକେ ପିଇବା ପାଣି ପାଉନଥିବା ବେଳେ ନାଲକୋ, ଏମ୍.ସି.ଏଲ୍. କୃତ୍ରିମ ଝରଣା ସୃଷ୍ଟିରେ ପଇସା ଖର୍ଚ୍ଚ କରି ଅଫିସ ସୌନ୍ଦର୍ଯ୍ୟ ବଢ଼ାଉଛନ୍ତି । ଯେଉଁ ଲୋକମାନେ ଦେଶର ସ୍ୱାର୍ଥପାଇଁ ବାସଚ୍ୟୁତ ହେଲେ, ଜୀବନ ଜୀବିକା ହରାଇଲେ, ସେମାନେ ଆଜି ଧୂଳି ଧୂଆଁରେ ଜୀବନ କଟାଉଛନ୍ତି । ବାୟୁପ୍ରଦୂଷଣ, ଶବ୍ଦପ୍ରଦୂଷଣର ଶିକାର ହେଉଛନ୍ତି । ସେମାନଙ୍କୁ ପିଇବା ପାଣି ମିଳୁନାହିଁ ଯାହା ମିଳୁଥିଲା ତାହା ଆଜି ପ୍ରଦୂଷିତ । ରୋଗ ଭୋକରେ ଲୋକ ଜୀବନ ବିତାଉଛନ୍ତି । ସେମାନଙ୍କ କଥା ବୁଝିବା ପାଇଁ ସରକାରଙ୍କର କୌଣସି ଯୋଜନା ବା ବିଶେଷ କାର୍ଯ୍ୟକ୍ରମ ମଧ୍ୟ ନାହିଁ । ଖଣି ଦ୍ୱାରା ସିଧାସଳଖ ଭାବେ ଯେଉଁ ପରିବାର ଗୁଡ଼ିକ ବାସଚ୍ୟୁତ ହେଉଛନ୍ତି ସେମାନଙ୍କୁ ଥଇଥାନ ପାଇଁ କୌଣସି ସ୍ପଷ୍ଟନୀତି ନାହିଁ । ଜମିପଟ୍ଟା ନଥିବା ଅଞ୍ଚଳରେ ଶହ ଶହ ଦଳିତ ଓ ଆଦିବାସୀ ପରିବାରକୁ ବିନା କ୍ଷତିପୂରଣରେ ତାଙ୍କ ଭିଟାମାଟିରୁ ଉଚ୍ଛେଦ କରାଯାଉଛି । ସେମାନଙ୍କ ବିକଳ୍ପ ଜୀବିକାର କୌଣସି ବନ୍ଦୋବସ୍ତ କରାଯାଉନାହିଁ । ୨୦୦୦ ମସିହାରେ ଝାରସୁଗୁଡାର ଘନାମାଳରୁ ବାସଚ୍ୟୁତ ହୋଇଥିବା ୩୦ଟି ପରିବାର ମଧ୍ୟରୁ ୧୯ଟି ପରିବାରକୁ କୌଣସି କ୍ଷତିପୂରଣ ଦିଆଯାଇନାହିଁ । ୪ଟି ପରିବାର ଗଣେଷନଗର, ୫ଟି ପରିବାର ଅସ୍ଥାୟୀଭାବେ ଏମ.ସି.ଏଲ. କଲୋନୀରେ, ୧୦ ପରିବାର ଖଇରକୁନି ଗ୍ରାମରେ ଆଶ୍ରୟ ନେଇଛନ୍ତି । ଏମାନେ ସମସ୍ତେ ଆଦିବାସୀ ସଂପ୍ରଦାୟର । ସେହିପରି ଟିଙ୍ଗିସମାଳ ଗାଁର ୧୦୦ଟି ଦଳିତ ପରିବାରକୁ ଜମିପଟା ନଥିବାରୁ କୌଣସି କ୍ଷତିପୂରଣ ଦିଆନଯାଇ ତଡିଦିଆଯାଇଛି । ପ୍ରକାଶ ଥାଉକି ଏମାନେ ପ୍ରଥମରେ ୧୯୫୬ରେ ହିରାକୁଦ ଡ୍ୟାମ ପାଇଁ ଓ ୧୯୭୪ ଏବଂ ୨୦୦୩ରେ କୋଇଲା ଖଣି ପାଇଁ ମୋଟ ୩ଥର ବାସଚ୍ୟୁତ ହେଲେଣି । ୧୯୭୪ରେ ଏମାନଙ୍କୁ ରହିବା ପାଇଁ ଲିଜ୍ ମିଳିଥିଲା କିନ୍ତୁ ଏଯାଏ ପଟ୍ଟା ହୋଇପାରିନାହିଁ । ସେହିପରି ଶିମିଳିଗୁଡା, ଅନୁଗୁଳ, ସୁନ୍ଦରଗଡ ଆଦି ଖଣି ଅଞ୍ଚଳରେ ବାସଚ୍ୟୁତ ପରିବାର ମାନଙ୍କ ସମଦଶା । ଏହି ସବୁ ଅଞ୍ଚଳ ବିଶେଷ ଭାବେ ଦଳିତ ଓ ଆଦିବାସୀ ବହୁଳ । ଓଡ଼ିଶା ସରକାର କେବଳ ୧୯୯୮ ମସିହାରେ Policy for rehabilitation of displacement persons/families in case of mining projects in the State, Government of Orissa Revenue, and Excise Department, 1998 ରହିଛି । ଯେଉଁଥିରେ ଥଇଥାନ ବ୍ୟବସ୍ଥାକୁ ବିସ୍ତୃତ ଭାବେ କୁହାଯାଇ ନାହିଁ ।

- ଶିମିଳିଗୁଡାରୁ ନାଲକୋ ପାଇଁ ଯେଉଁ ୨୨ଟି ଗାଁ ଉଠିଲା ସେଥିରୁ ୧୧ଟି ଗାଁର ଲୋକମାନଙ୍କ କୌଣସି ଖବର ନାହିଁ ।

❖ ତାଳଚେର, ଅନୁଗୁଳ, ଝାରସୁଗୁଡା, ଯୋଡା, କୋରାପୁଟ ଆଦି ଖଣି ଓ ଶିଳ୍ପ ଅଞ୍ଚଳରେ ସ୍ଥାନୀୟ ଲୋକଙ୍କ ପାଇଁ ଚାକିରି ନାହିଁ କି ଜମି ବଦଳରେ ଜମି କ୍ଷତିପୂରଣ ଭାବେ ଦିଆଯାଉନାହିଁ ।

❖ କୋଇଲାଖଣି ଓ ଶିଳ୍ପ ପ୍ରଦୂଷଣ ଦ୍ୱାରା ଇବ୍ ଓ ବ୍ରାହ୍ମଣୀ କୂଳରେ ବସ୍ତିଥିବା ଗ୍ରାମବାସୀ ବିଶେଷକରି ଧୀବର ଓ କୃଷକମାନଙ୍କ ଜୀବନଜୀବିକା ସମ୍ପୂର୍ଣ୍ଣ ରୂପେ କ୍ଷତିଗ୍ରସ୍ତ ।

କୋଇଲା ଖଣି ଦ୍ୱାରା ତାଳଚେର, ଝାରସୁଗୁଡା, ଲକ୍ଷ୍ମଣପୁର, ହେମଗିରି ଆଦି ଅଞ୍ଚଳରୁ ପ୍ରାୟ ୨୦୦ଗାଁ ବାସଚ୍ୟୁତ ହୋଇଛନ୍ତି ଓ ଆଗାମୀ ଦିନରେ ଏହା ବଢ଼ିବ । ଏହି ବାସଚ୍ୟୁତ ପରିବାର ବିଶେଷ ଭାବରେ କୃଷକ, କୃଷି ଶ୍ରମିକ, ଜଙ୍ଗଲ ଶ୍ରମିକ ଓ ଦିନ ମଜୁରିଆ ଯେଉଁମାନେ କୃଷି ଓ ଜଙ୍ଗଲ ଉପରେ ନିର୍ଭରଶୀଳ କିନ୍ତୁ ଖଣି କମ୍ପାନୀ କୃଷିଜମି, ଜଙ୍ଗଲ ଧ୍ୱଂସ କରି ଚାଲିଛନ୍ତି । ଏହାର କୌଣସି ବିକଳ୍ପ ବ୍ୟବସ୍ଥା ମଧ୍ୟ ନାହିଁ । ଏହି ସ୍ଥିତିରେ ଶହ ଶହ ବାସଚ୍ୟୁତ ପରିବାର ସହର କିମ୍ବା ଖଣି ଅଞ୍ଚଳର ବସ୍ତିରେ କିମ୍ବା ଶ୍ରମିକ ସାଜି ଅନ୍ୟରାଜ୍ୟକୁ କାମ ଉଦ୍ଦେଶ୍ୟରେ ଚାଲିଯାଉଛନ୍ତି ।

ଓଡ଼ିଶାରେ ଖଣି କ୍ଷେତ୍ରରେ ମେସିନ ପ୍ରଚଳନ, ବ୍ୟାପକ ନିଯୁକ୍ତି ହ୍ରାସ କରିବ । ଶ୍ରମିକ ମାନଙ୍କ ଅଧିକାରକୁ ଉଲଙ୍ଘନ କରିବା ପାଇଁ ଶ୍ରମ ଆଇନ୍‌ରେ ପରିବର୍ତ୍ତନ ଓ ଗଣତାନ୍ତ୍ରିକ ପ୍ରତିବାଦକୁ ବାତିଲ କରାଯାଉଛି । ଶ୍ରମିକ ମାନଙ୍କୁ ସଂଗଠିତ ନହେବା ପାଇଁ କାଜୁଆଲ ଲେବର, କଣ୍ଟ୍ରାକ୍ଟ ଲେବର ଆଦି ନାମରେ କାମ କରାଯାଉଛି । ଘରୋଇକରଣ ପାଇଁ ଯୁକ୍ତି କରାଯାଉଛି ଯେ, ରାଷ୍ଟ୍ର କାହିଁକି ବେପାର କରିବ କିନ୍ତୁ କ୍ଷତିର ଜାତୀୟକରଣ ଓ ଲାଭର ଘରୋଇକରଣ ଚାଲିଛି, ଯେଉଁଥିରେ ସରକାରୀ ଉଦ୍ୟୋଗକୁ ଘରୋଇ କମ୍ପାନୀକୁ ବିକ୍ରି କରାଯାଇଛି ଓ କ୍ଷତି ଗୁଡିକୁ ରାଜ୍ୟବାସୀ ଭରଣା କରୁଛନ୍ତି । ଖଣି ଏକ ୧୦୦%ଲାଭ ଦାୟକ କ୍ଷେତ୍ର । ଏଠାରେ କ୍ଷତି ପ୍ରଶ୍ନ ନାହିଁ । କେବଳ ଖୋଳି କରି ବିକ୍ରି କରିବା ହିଁ ମୁଖ୍ୟକାମ । ଏହାକୁ କାହିଁକି ସରକାର ଘରୋଇ କମ୍ପାନୀକୁ ଦେଉଛନ୍ତି ? ଖଣି କ୍ଷେତ୍ରରେ Public Sector କମ୍ପାନୀମାନେ ଓ.ଏନ୍.ଜି.ସି., ନାଲକୋ, ଆଇ.ଆର.ଏ, ଏମ୍.ସି.ଏଲ., ଓ.ଏମ୍.ସି. ପ୍ରାୟ ସମସ୍ତେ ଲାଭ କରୁଛନ୍ତି ।

ଭାରତ ଏକ ଜନବହୁଳ ଦେଶ । ଏଠାରେ ଶ୍ରମ ପ୍ରଧାନ ଖଣି ବଦଳରେ କାହିଁକି ଯନ୍ତ୍ର ପ୍ରଧାନ ଖଣି କରାଯାଉଛି ? ଅଣ ସଂଗଠିତ ଖଣି ଶ୍ରମିକ ମାନଙ୍କ ଆକଳନ କାହିଁକି କରାଯାଉନାହିଁ ? ଖଣି ଶ୍ରମିକ ଭାବରେ କାହିଁକି ଖଣି ଅଞ୍ଚଳର ସବୁ ଶ୍ରମିକ ଖଣି ଶ୍ରମିକର ମାନ୍ୟତା ପାଉନାହାଁନ୍ତି ?

1. Iron Ore Mines, Manganese Ore mines and Chrome Ore mines labour welfare cess ACt 1976.

2. The Mica Mines Labour Welfare find Act, 1946.

3. The Lime Stone and Dolamite mines Labour Welfare find Act 1972 ଆଦି ଆଇନ୍ ସବୁ ଶ୍ରମିକ ମାନ୍‌ଙ୍କ ପାଇଁ କାର୍ଯ୍ୟକାରୀ ହେଉନାହିଁ ? ଖଣିରେ କାମ କରୁଥିବା ଶ୍ରମିକ ମାନଙ୍କ ପାଇଁ ସର୍ବନିମ୍ନ ବ୍ୟବସ୍ଥା ନାହିଁ । କେବଳ ନିରାପତ୍ତା ସପ୍ତାହରେ ଶ୍ରମବିଭାଗ ଅଫିସରମାନଙ୍କୁ ଦେଖାଇବା ପାଇଁ ଫଟୋ ଉଠାଇବାକୁ ଚଷମା, ଜୋତା, ହେଲମେଟ ଆଦି ପିନ୍ଧିବାକୁ ପଡିଥାଏ । ମହିଳା ଶ୍ରମିକମାନଙ୍କ ପାଇଁ ପାଇଖାନା, କ୍ରେଚର ବ୍ୟବସ୍ଥା ମଧ ହୋଇପାରି ନାହିଁ । ଖଣି ଅଞ୍ଚଳର ହଟିଙ୍ଗ ଦେଖିଲେ ମଣିଷମାନେ କିଭଳି ଜୀବନ ବିତାଉଛନ୍ତି ତାର ସ୍ପଷ୍ଟ ଚିତ୍ର ମିଳିପାରିବ ।

ଖଣି ଅଞ୍ଚଳରେ ଗ୍ରାମବାସୀମାନେ ଧୂଳି, ଶବ୍ଦପ୍ରଦୂଷଣ, ବାୟୁ ପ୍ରଦୂଷଣ ପ୍ରତିଦିନ ଅଙ୍ଗେ ନିଭାଉଛନ୍ତି । ଖଣି ପାଖ ଚାଷ ଜମିରେ ଖଣିଜ ଖଣ୍ଡର ଆସ୍ତରଣ ଫଳରେ ଅନେକ ସ୍ଥାନରେ ଚାଷଜମି ପଡିଆ ପଡିଛି । ଖଣି ପାଖାପାଖି ଜଳାଶ୍ରୟ ଶୁଖିଯାଉଛି ଓ ବ୍ୟାପକ ଜଙ୍ଗଲ କଟା ଫଳରେ ସେ ଅଞ୍ଚଳରେ ମୃତ୍ତିକାକ୍ଷୟ ସହ, ଜଙ୍ଗଲ ସମ୍ପଦର ଅଭାବ ଚାଷକୁ ସିଧାସଳଖ ପ୍ରଭାବିତ କରୁଛି । ଏହି ସବୁ ଗ୍ରାମ ଗୁଡିକ ପାଇଁ ତଥାକଥିତ "ପେରିଫେରି ଡେଭେଲପମେଣ୍ଟ" ବ୍ୟବସ୍ଥା ଥିଲେ ମଧ ଏହାର ବାସ୍ତବ କାର୍ଯ୍ୟକାରିତା ହୋଇପାରୁନାହିଁ । ବରଂପେରିଫେରି ପାଣ୍ଠି ଅନ୍ୟତ୍ର ଖର୍ଚ୍ଚ ହେବାର ନଜିର ରହିଛି ଓ ଏହି ପାଣ୍ଠିର ଖର୍ଚ୍ଚ ବିଷୟରେ ୧୯୯୮ ମସିହାରେ ଏମ୍.ସି.ଏଲ. ପେରିଫେରି କମିଟିର ଖୋଦ ଚେୟାରମ୍ୟାନ ଘୋର ସନ୍ଦେହ ପ୍ରକାଶ କରିଥିଲେ । (Special Agenda notes for the Rehabilitation Advisory Committee (RAC)meeting of Mahanadi Coalfields Limited (MCL) dated 23.05.98)

ଯେଉଁମାନେ ଖଣି ଅଞ୍ଚଳ ବସ୍ତିରେ ରହି ଅଣ ସଂଗଠିତ ଶ୍ରମିକ ଭାବେ ଦିନ ମଜୁରିଆ ହୋଇ ବିଭିନ୍ନ ପ୍ରକାର କାର୍ଯ୍ୟରେ ନିୟୋଜିତ ଅଛନ୍ତି ସେମାନଙ୍କୁ ସର୍ବନିମ୍ନ ମଜୁରୀ ମଧ ମିଳୁନାହିଁ, ରହିବାକୁ ଘର ନାହିଁ । ଶିକ୍ଷା ସ୍ୱାସ୍ଥ୍ୟର କୌଣସି ବ୍ୟବସ୍ଥା ନାହିଁ । ଏମାନେ ଅର୍ଦ୍ଧମାନବ ଅବସ୍ଥାରେ ବଞ୍ଚିରହିଛନ୍ତି ।

ଓଡ଼ିଶାର ଖଣି ଅଞ୍ଚଳହିଁ ଅପରାଧ ପ୍ରବଣ ଅଞ୍ଚଳଭାବେ ପରିଚିତ । ମଦ, ମାଦକଦ୍ରବ୍ୟ ପ୍ରସାର, ହିଂସା, ଗୁଣ୍ଡାଗିରି ଫଳରେ ସାଧାରଣ ଜୀବନଯାତ୍ରା ବ୍ୟାହତ ହେବା ସହ

ବିଶେଷଭାବେ ଖଣି ଅଞ୍ଚଳରେ ମହିଳା ଓ ଶିଶୁ ମାନଙ୍କ ସ୍ଥିତି ସବୁଠୁ ବିପନ୍ନ । ସେମାନଙ୍କର କୌଣସି ପ୍ରକାର ସୁରକ୍ଷା ଓ ନିରାପତ୍ତା ନାହିଁ ।

କମ୍ପାନୀ ମାନଙ୍କ ମନମୁଖୀ କାମ ଫଳରେ ବ୍ୟାପକ ଜଙ୍ଗଲ ଧ୍ୱଂସ, ଚାଷଜମି ନଷ୍ଟ, ଜଳସ୍ରୋତକୁ ଖଣିକାମରେ ବ୍ୟବହାର କରିବା, ପ୍ରଦୂଷଣ ନିୟନ୍ତ୍ରଣ ନକରିବା ଫଳରେ ଖଣି ଅଞ୍ଚଳର ଗ୍ରାମବାସୀମାନେ ନାନାପ୍ରକାରର ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଏସିଆର ସର୍ବବୃହତ ଗଭୀର କ୍ରୋମ ଖଣି ଅଞ୍ଚଳ ସୁକିନ୍ଦାରେ ଜଳସ୍ତର ହ୍ରାସପାଇବା ଓ ସ୍ଥାନୀୟ ମହାଗିରି ପାହାଡରୁ ବାହାରିଥିବା ଝରଣା ସବୁ ଶୁଖିଯିବା ଫଳରେ ଚାଷବାସ ଓ ପିଇବା ପାଣିର ଘୋର ଅସୁବିଧା ସୃଷ୍ଟି ହେଉଛି । ଏପରିକି ନିକଟସ୍ଥ ଦମଶଳା ନଦୀରେ ହେକ୍ସାଭାଲେଣ୍ଟ କ୍ରୋମିୟମ ବିଷ ଦ୍ୱାରା ପ୍ରଦୂଷିତ ହେବା ଫଳରେ ଏହା କୂଳରେ ଥିବା ଗ୍ରାମବାସୀଙ୍କ ପାଇଁ ଏହା ବିପଦ ସୃଷ୍ଟି କରୁଛି । ଭୁବନେଶ୍ୱରସ୍ଥ ଗବେଷଣା ସଂସ୍ଥା ଆର.ଆର.ଏଲ୍‌ଙ୍କ ରିପୋର୍ଟ ପରେ ମଧ୍ୟ କମ୍ପାନୀମାନେ ଜଳ ବିଶୋଧନ କାରଖାନା କାର୍ଯ୍ୟକାରୀ କରୁନାହାଁନ୍ତି । ଏହା ସ୍ଥାନୀୟ ଜଳ ଉତ୍ସ ସବୁକୁ ପ୍ରଦୂଷିତ କରି ଚାଲିଛି । ପ୍ରାୟ ସମସ୍ତ ଖଣି ଅଞ୍ଚଳ ଓ ବିଶେଷ କରି ଝାରସୁଗୁଡା, ତାଳଚେର, ଯୋଡା ଆଦି ଅଞ୍ଚଳରେ ପାଣି ଏକ ମୁଖ୍ୟ ସମସ୍ୟା । ବିଶେଷକରି ଖରାଦିନେ ଏହି ସବୁ ଅଞ୍ଚଳରେ ତାପମାତ୍ରା ୪୫°-୫୦° ଓ ସ୍ଥାନୀୟ କୂଅ, ପୋଖରୀ, ଝରଣା ଆଦି ଶୁଖିଯାଏ । ପ୍ରବଳ ଖରା, ଗରମ ଓ ଧୂଳି ଧୂଆଁ ସାଙ୍ଗକୁ ଜଳ କଷ୍ଟର ଦୁଃଖ କେବଳ ଅନୁଭବୀମାନେ ହିଁ ଜାଣିପାରିବେ ।

ସ୍ଥାନୀୟ ପ୍ରଶାସନର ଦଲାଲୀ ନୀତି, ସରକାରୀ ଉଦାସୀନତା ଓ କମ୍ପାନୀ ମାନଙ୍କ ମନମୁଖୀ କାର୍ଯ୍ୟରେ କେବଳ ବଳି ପଡୁଛନ୍ତି କୃଷକ, ଶ୍ରମିକ, ମତ୍ସ୍ୟଜୀବୀ, ଦିନମଜୁରିଆ, ଜଙ୍ଗଲ ଶ୍ରମିକ ଯେଉଁମାନେ ମହିଳା, ଦଳିତ, ଆଦିବାସୀ ଓ ପଛୁଆ ବର୍ଗର ଯେଉଁମାନେ ଓଡ଼ିଶାର ୮୫ଭାଗ ଓ ଯେଉଁମାନଙ୍କ ସମସ୍ୟା ହେଉଛି ଓଡ଼ିଶାର ବୁନିଆଦି ସମସ୍ୟା ।

ଓଡ଼ିଶାର ଯେଉଁସ୍ଥାନରେ ଖଣି ଖୋଳା ଚାଲିଥିଲା ସେଠାରେ ଖଣି କାମ ବନ୍ଦ ହୋଇଯିବା ଫଳରେ ଯେଉଁମାନେ କାମ କରୁଥିଲେ ତାଙ୍କ ଅସୁବିଧା କହିଲେ ନସରେ, ସୁନ୍ଦରଗଡର ପୁରୁଣାପାଣି, କେନ୍ଦୁଝର କ୍ରୋମାଇଟ୍ ମାଇନିଂ, ମୟୂରଭଞ୍ଜର ବାଦାମପାହାଡ ଅଞ୍ଚଳ, କେନ୍ଦୁଝର ଟେନସା ଆଦି ସ୍ଥାନରେ ବ୍ୟାପକ ଶ୍ରମିକ ମାନଙ୍କ ଅବସ୍ଥା ଦୟନୀୟ । ସୁରାଟ, ମୁମ୍ବାଇ, ପଞ୍ଜାବ ଆଦି ସ୍ଥାନକୁ କାମ ଉଦ୍ଦେଶ୍ୟରେ ଚାଲିଯାଉଛନ୍ତି । ଅନ୍ୟପକ୍ଷରେ ବର୍ତ୍ତମାନ ସମସ୍ତ ପ୍ରସ୍ତାବିତ ଖଣି ଅଞ୍ଚଳରେ ଖଣି କମ୍ପାନୀମାନଙ୍କ ଦାଦାଗିରି ଚାଲିଛି । କେନ୍ଦୁଝରର ଓଲିବୁରଠାରେ ବି.କେ.ଷ୍ଟିଲ୍ସ ନାମକ

ଏକ କମ୍ପାନୀ ଗାଁ ରାସ୍ତାକୁ କାଟିଦେଇଛି । ଓ୍ୱାଟରସେଡକୁ ପୋତି ଦେଇଛି ଓ ଶାଳ ଜଙ୍ଗଲ କାଟି ଦେଇଥିଲେ ମଧ୍ୟ ପୋଲିସ କମ୍ପାନୀ ବଦଳରେ ଗ୍ରାମବାସୀଙ୍କୁ ହଇରାଣ କରୁଛି । କେନ୍ଦୁଝରର ଯୋଡା, ବଡବିଲ ଅଞ୍ଚଳରେ ଖଣି କମ୍ପାନୀମାନଙ୍କ ଦୌରାତ୍ମ୍ୟ କଥା ସମସ୍ତଙ୍କୁ ଜଣା । ସେହିପରି କାଶୀପୁର, ଲାଞ୍ଜିଗଡ, ଝାରସୁଗୁଡା, ଅନୁଗୁଳ, ବଲାଙ୍ଗିର ଆଦି ଅଞ୍ଚଳର କମ୍ପାନୀମାନଙ୍କ ଦାଦାଗିରି ଚାଲିଛି ।

ଓଡ଼ିଶାରେ ଖଣି ଅଞ୍ଚଳରେ ଦିନ ମଜୁରିଆ ଶ୍ରମିକମାନଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ଏମାନଙ୍କ ଜୀବନର ଅଧାସମୟ କଟୁଛି ଟ୍ରକ ଡାଲାରେ, ଗଛମୂଳେ କି ଖାଦାନ ଭିତରେ । ପ୍ରାୟ ୧୫ବର୍ଷରୁ କମ୍ ବୟସରୁ କାମ ଆରମ୍ଭ କରି ନାନା ପ୍ରକାର ରୋଗର ଶୀକାର ହେଉଛନ୍ତି । ଖଣିଅଞ୍ଚଳରେ ହାରାହାରି ବୟସ ୪୦-୫୦ବର୍ଷ ମଧ୍ୟରେ ଜନସାଧାରଣ ଓ ଶ୍ରମିକ ମାନଙ୍କର ମୃତ୍ୟୁ ହେଉଛି ।

ପ୍ରାକୃତିକ ସମ୍ପଦ-ଖଣିଜ ସମ୍ପଦ, ଜମି, ଜଳ, ଜଙ୍ଗଲ ସହ ଶ୍ରମଶକ୍ତିର ଅବାଧ ଲୁଣ୍ଠନ ଚାଲିଛି । ଏହି ପ୍ରକ୍ରିୟା ଧିରେ ଧିରେ ସେଇ ଅଞ୍ଚଳ ସବୁକୁ ମରୁଭୂମି କରିବା ସହ ଜନଶୂନ୍ୟ ମଧ୍ୟ କରିବାର ବ୍ୟବସ୍ଥା କାର୍ଯକାରୀ କରାଯାଉଛି । ଆଗାମୀ ବଂଶଧର ମାନଙ୍କ ପାଇଁ ଆମେ କଣ ଛାଡିଯାଉଛେ ? ମରୁଭୂମି ଆଉ ବିକଳାଙ୍ଗ ମଣିଷ ! ଯାହା ଆଜି ହୋଇଛି ଆଫ୍ରିକା ଓ ଲାଟିନ୍ ଆମେରିକା ଦେଶ ମାନଙ୍କରେ ।

ଏ ପ୍ରକାର ସ୍ଥିତିରେ କୌଣସି ପରିବର୍ତ୍ତନ ନ ଆସିଥିଲାବେଳେ ଖଣି କାର୍ଯ୍ୟକୁ ବଢ଼ାଇବା ପାଇଁ ବହୁ ଦେଶୀୟ କମ୍ପାନୀମାନଙ୍କୁ ସରକାର ନିମନ୍ତ୍ରଣ କରି ଆଣୁଛନ୍ତି । ଓଡ଼ିଶାର ଖଣିଜ ପଦାର୍ଥ ଉତ୍ତୋଳନ ପାଇଁ ୧୩ଟି ବହୁଦେଶୀୟ କମ୍ପାନୀଙ୍କୁ ବୈଦେଶିକ ପୁଞ୍ଜିବିନିଯୋଗ ଉନ୍ନୟନ ବୋର୍ଡର ମଞ୍ଜୁରୀ ମିଳିଛି । ଏହି କମ୍ପାନୀମାନେ ଖଣି ଖୋଳିବା ସହ ବୈଷୟିକ ପରାମର୍ଶ ମଧ୍ୟ ଯୋଗାଇଦେବେ । ଏହି କମ୍ପାନୀ ଗୁଡିକ ଅଷ୍ଟ୍ରେଲିଆ, ନରୱେ, କାନାଡା, ପୋଲାଣ୍ଡ, ଦକ୍ଷିଣ ଆଫ୍ରିକା, ସ୍ପେନ୍, ଇଂଲଣ୍ଡ, ଜର୍ମାନୀ, ମାଲେସିଆ, ଆମେରିକା ପ୍ରଭୃତି ଦେଶର ଅଟନ୍ତି ଏବଂ ଏହି କମ୍ପାନୀ ଗୁଡିକ ଓଡ଼ିଶାର ଗନ୍ଧମାର୍ଦ୍ଦନ (କେନ୍ଦୁଝର), କାଶିପୁର, ରାୟଗଡା, କଳାହାଣ୍ଡି, ନୂଆପଡା ଆଦି ଅଞ୍ଚଳରୁ ଖଣିଜ ଦ୍ରବ୍ୟ ଉତ୍ତୋଳନ କରିବେ । ସେଥିମଧ୍ୟରେ ବିଶେଷକରି ହୀରା, ସୁନା. ବକ୍ସାଇଟ୍, କପର, କାଥୋଡ, ଜିଙ୍କ, ଲୁହାପଥର, ସିଲିକା ପାଉଡର, ମୂଲ୍ୟବାନ ପଥର ଆଦି ଅନ୍ତର୍ଭୁକ୍ତ । ଏହି କମ୍ପାନୀ ଗୁଡିକ ମଧ୍ୟରେ ଅଛନ୍ତି, ଆଷ୍ଟନ ମାଇନିଂ ଲିମିଟେଡ୍-ଅଷ୍ଟ୍ରେଲିଆ, ହାଇଡ୍ରୋ ଆଲୁମିନିୟମ-ନରୱେ, ଆଲକାନ, ଆଲୁମିନିୟନ-କାନାଡା, ପୋଲସର୍ଭିସେସ୍

ଫରେନଟ୍ରେଡ ଏଣ୍ଟରପ୍ରାଇଜେସ-ପୋଲାଣ୍ଡ, ଏନ୍.ଡି.ଆଇ.ଓ୍ୱାଇ.ସି.ଏମ୍. ଇଙ୍କ-ସ୍ପେନ୍, ରିଓଟିଣ୍ଟୋ ମିନେରାଲ୍ସ ଡେଭେଲପମେଣ୍ଟ ଲିମିଟେଡ-ଇଂଲଣ୍ଡ, ଲାରସନ୍ ଏଣ୍ଡ ଟର୍ବୋ, ମାଇକ୍ରୋ ମିନେରାଲ୍ସ ମିକାଫାଇନ୍-ଜର୍ମାନୀ, କାସୁଲାଗ୍ରା ଏମ୍.ଡି.ଏମ୍.ଟିଏଚ୍.ଡି-ମାଲେସିଆ, ଫିଲିପ୍ ଡଜ୍ କର୍ପୋରେସନ ଲିଃ-ଆମେରିକା, ଡିବିଅରସ୍ ମୋରିସସ୍ ପ୍ରାଇଭେଟ୍ ଲିମିଟେଡ୍-ଦକ୍ଷିଣ ଆଫ୍ରିକା, ଏଙ୍ଗୋଲଭାଲ୍ ମାଇନିଂ ଲିମିଟେଡ୍-ଦକ୍ଷିଣ ଆଫ୍ରିକା ।

ଏହି କମ୍ପାନୀମାନେ ଆସିବା ଫଳରେ ଖଣି କାର୍ଯ୍ୟ ବହୁ ଗୁଣେ ବଢ଼ିବ ଓ ମେସିନ୍‌ର ବ୍ୟାପକ ପ୍ରୟୋଗ କରାଯାଇ ଖଣିଜ ସମ୍ପଦ ଉତ୍ତୋଳନ କରାଯିବ । ସରକାର ଏହି କମ୍ପାନୀମାନଙ୍କୁ ସମସ୍ତ ପ୍ରକାର ସୁବିଧା ଯୋଗାଇଦେବେ । କୌଣସି ପ୍ରକାର କ୍ଲିଅରାନ୍ସ ପାଇଁ କେବଳ ଗୋଟିଏ ବିଭାଗ ଦାୟିତ୍ୱ ନେବ । ରାସ୍ତାଘାଟ ସୁବିଧା, ରପ୍ତାନି ପାଇଁ ପୋର୍ଟ, ରେଲୱେ ଲାଇନ ଓ ଜାତୀୟ ରାଜପଥ ତଥା ଶସ୍ତାରେ, ବିଜୁଳି, ପାଣି ଓ ଲୋକଙ୍କୁ ଖଣି ଯାଗାରୁ ଖାଲି କରିବା ପାଇଁ ପୋଲିସ୍, ମିଲିଟାରୀ ଓ ବେସରକାରୀ ତଥା ସରକାରୀ ଗୁଣ୍ଡାମାନଙ୍କୁ ନିୟୋଜିତ କରାଯିବ । ଏ ସମସ୍ତ କାମକୁ ଆଇନ୍ ସମ୍ମତ କରିବା ପାଇଁ ଆଇନ୍ କାନୁନ୍ ଓ ସମ୍ବିଧାନ ମଧ ପରିବର୍ତ୍ତନ କରାଯିବ ।

ସମତା ଜଜ୍‌ମେଣ୍ଟପରେ ଖଣି ପାଇଁ ଆଇନ୍ କାନୁନ୍‌ରେ ପରିବର୍ତ୍ତନ ପାଇଁ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ତତ୍ପରତା ଏକଥାର ପ୍ରମାଣ । ଯେଉଁମାନେ ଏ ଅନ୍ୟାୟର ପ୍ରତିବାଦ କରୁଛନ୍ତି, ସେମାନଙ୍କୁ ଦେଶଦ୍ରୋହୀ, ବିକାଶ ବିରୋଧି, ରାଜନୈତିକ ହିଂସାକାରୀ ଆଦି ନାନା ପ୍ରକାର ନାମରେ ଦମନ କରାଯାଉଛି । ଦଳିତ, ଆଦିବାସୀ, ଶ୍ରମିକ ଶ୍ରେଣୀର ନ୍ୟାୟପୂର୍ଣ୍ଣ ପ୍ରତିବାଦକୁ ପୋଲିସ ଓ ଗୁଣ୍ଡାମାନଙ୍କଦ୍ୱାରା ଦମନ କରାଯାଉଛି । କାଶୀପୁରରେ ପୋଲିସ ଗୁଳି ଓ ଲାଞ୍ଜିଗଡରେ ଅନ୍ୟାୟ ଗିରଫଦାରୀ, ତାଳଚେର ଓ ଘନାମାଳରେ ପ୍ରଶାସନ ଓ ଗୁଣ୍ଡାଙ୍କ ଆକ୍ରମଣ ଏହାର ଉଦାହରଣ । ଖଣି ସମ୍ପଦର ମାଲିକ କିଏ ? କେଉଁମାନଙ୍କ ପାଇଁ ଏହା ବ୍ୟବହାର କରାଯିବ ? ପାଣି, ପବନ, ବିଜୁଳି, ରାସ୍ତାଘାଟ ରାଜ୍ୟର ସବୁନାଗରିକ ମାନଙ୍କ ପାଇଁ ନା ମୁଷ୍ଟିମେୟ ଲୋକଙ୍କ ପାଇଁ ? କାହିଁକି ସମସ୍ତ ନାଗରିକ ମାନଙ୍କ ପାଇଁ ସର୍ବନିମ୍ନ ବାସଗୃହ ବ୍ୟବସ୍ଥା ହୋଇପାରୁନାହିଁ ? କାହିଁକି ୫୦୦୦ ଏକର ଲିଜ୍ ପାଇଁ ସରକାର ବ୍ୟସ୍ତ କିନ୍ତୁ ୫୦ ବର୍ଷ ହେଲା ୫ଡିସିମିଲର ଜମିପଟ୍ଟା ମିଳିପାରିଲା ନାହିଁ ? କିଏ ସେଥିପାଇଁ ଦାୟୀ ? ଓଡ଼ିଶାର ରାଜନୀତିରେ ଏହା ଏକ ପ୍ରସଙ୍ଗ ହୋଇପାରୁ ନାହିଁ କାହିଁକି ?

ଓଡ଼ିଶାର ପାରଦ୍ୱୀପ ଓ ଗୋପାଳପୁର ମଧଦେଇ ଖଣିଜ ପଦାର୍ଥ ରପ୍ତାନି ଚାଲିଛି । କେବଳ ପାରାଦ୍ୱୀପ ବନ୍ଦରର ୯୦ ଭାଗ ରପ୍ତାନୀ ହେଉଛି ଖଣିଜ ପଦାର୍ଥ । ଏହି ବନ୍ଦରକୁ

ବଢ଼ାଇବା ପାଇଁ ପାରାଦ୍ୱୀପର ସଂପ୍ରସାରଣ କରାଯାଉଛି ଓ ଏହା ସହ ଗୋପାଳପୁର ବନ୍ଦରର ସଂପ୍ରସାରଣ ପାଇଁ ଆଦାନୀ ଗ୍ରୁପ୍ ଅଫ କମ୍ପାନୀ ଓ ଧାମରା ବନ୍ଦର ପାଇଁ M/s International Sea Ports Ltd, Singapur ସହ ଚୁକ୍ତି କରାଯାଇଛି । ଏହା ବ୍ୟତୀତ ୯ଟି ଛୋଟ ବନ୍ଦରର ପୁନରୁଦ୍ଧାର ଓ ବିକାଶ ମଧ୍ୟ କରାଯିବ ।

୧୯୯୯-୨୦୦୦ ମସିହାରେ ଓଡ଼ିଶାରୁ ଚାର୍ଜକ୍ରୋମ/ଫେରୋକ୍ରୋମ ଭଳି ଖଣିଜ ପଦାର୍ଥ ଚୀନ୍, ଜାପାନ୍, କୋରିଆ, ଇଂଲଣ୍ଡ, ହଲାଣ୍ଡ, ବ୍ରାଜିଲ୍, ତାଇୱାନ ଓ ବେଲଜିୟମ କୁ ରପ୍ତାନୀ କରାଯାଇଥିଲା । ଆମେରିକା, କୋରିଆ, ରୁଷିଆ, ଚୀନ୍, ଇଟାଲୀ, ଜାପାନ, ସିଙ୍ଗାପୁର, ଇଣ୍ଡୋନେସିଆ, ବଂଲାଦେଶ, ତାଇୱାନ ଆଦି ଦେଶକୁ ଆଲୁମିନିୟମ/ ଆଲୁମିନା ରପ୍ତାନୀ କରାଯାଇଥିଲା । ନେପାଳ ଓ ବାଂଲାଦେଶକୁ ସ୍ପଞ୍ଜ ଆଇରନ୍, ପିଗ୍ ଆଇରନ୍ ରପ୍ତାନୀ କରାଯାଉଥିଲା । ନେଦରଲ୍ୟାଣ୍ଡ, ଦୁବାଇ, ସ୍ୱିଡେନ, ଜାପାନ, ଇଣ୍ଡୋନେସିଆ, ବାଂଲାଦେଶ, ବ୍ରାଜିଲ, କୋରିଆ, କାନାଡା, ଇଂଲଣ୍ଡ, ଆମେରିକା, ଇରାନ୍, ଇଟାଲୀ, ଚିଲି, ମାଲେସିଆ ଆଦି ଦେଶକୁ ରିଫ୍ରାକ୍ଟୋରିଜ୍ ଆଣ୍ଡ ପ୍ରଡକ୍ଟସ୍ ରପ୍ତାନୀ କରାଯାଉଥିଲା । ବାଂଲାଦେଶ, ତୁର୍କୀ, ଜାପାନ, ହଙ୍ଗେରୀ, ଇଟାଲୀ, ଦକ୍ଷିଣ ଆଫ୍ରିକା, ସାଉଦୀ ଆରବିୟାକୁ ସିମେଣ୍ଟ ରପ୍ତାନୀ କରାଯାଉଥିଲା ।

ବିକାଶଶୀଳ ଦେଶରେ ଖଣିଜ ସମ୍ପଦ ରହିଥିଲେ ମଧ୍ୟ ତାହାର ବ୍ୟବହାର ନକରି ତୃତୀୟ ବିଶ୍ୱର ଗରିବ ଦେଶମାନଙ୍କରୁ ଆମଦାନୀ କରି ଗଚ୍ଛିତ ରଖାଯାଇଛି । ଜାପାନ ଦେଶ ସମୁଦ୍ର ମଧ୍ୟରେ ଲୁହାପଥର ଗଚ୍ଛିତ ରଖିବା ଓ ଇଉରୋପର କୋଇଲା କ୍ଷେତ୍ର ଜମାଇବା ଏହାର ଏକ ଉଦାହରଣ ।

ଏହା ସହ ଓଡ଼ିଶା ଉପକୂଳ ଜାତୀୟ ରାଜପଥ ୫୭୪କି.ମି. ବ୍ୟାପି ତିଆରି କରାଯିବ, ଯାହା ଦକ୍ଷିଣରେ ଆନ୍ଧ୍ର ଓ ଉତ୍ତରରେ ପଶ୍ଚିମବଙ୍ଗକୁ ସଂଯୋଗ କରିବ । ଏହି କାର୍ଯ୍ୟକ୍ରମ ପାଇଁ ନରୱେ ସରକାର ସହାୟତାର ପ୍ରସ୍ତାବ ରହିଛି । ପାରାଦ୍ୱୀପ ଓ ଗୋପାଳପୁରକୁ ମୁକ୍ତ ବାଣିଜ୍ୟ କେନ୍ଦ୍ର (Free Eco Zone) କରାଯିବାର ପ୍ରକ୍ରିୟା ଆରମ୍ଭ ହୋଇଛି ଓ କମ୍ପାନୀ ମାନଙ୍କପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରାଯାଉଛି । ଖଣିଜ ପଦାର୍ଥ ମାର୍କେଟିଙ୍ଗ ସୁବିଧା ପାଇଁ Export Promotion Industrial Park ଓ Infocityର ବ୍ୟବସ୍ଥା ମଧ୍ୟ କରାଯାଉଛି । ସେହିପରି ରେଲୱେ ଲାଇନ୍, ଏକ୍ସପ୍ରେସ ହାଇୱେ, ଜାତୀୟ ରାଜପଥ ଗୁଡିକ ମଧ୍ୟ ତିଆରି କରାଯିବ ।

ଯେଉଁ ଭିତ୍ତିଭୂମି ରାଜ୍ୟର ପଇସାରେ ତିଆରି ହେଉଛି ତାହା କାହା ପାଇଁ ହେଉଛି । ଯେଉଁ ବିକାଶର ଦୁହାଇ ଦିଆଯାଇ ଏହା କରାଯାଉଛି, ସେହି ବିକାଶରେ ଓଡ଼ିଶାର ସାଧାରଣ ଜନତାର ଭାଗ ଅଛି ନା ନାହିଁ । ଯେଉଁମାନେ ପଇସାଦେବେ ସେଇମାନେ ଏସବୁ ଭିତ୍ତିଭୂମି ବ୍ୟବହାର କରିପାରିବେ ଓ ବିଶେଷଭାବେ ଓଡ଼ିଶାର ଖଣିଜ ସମ୍ପଦକୁ ବନ୍ଦର ପର୍ଯ୍ୟନ୍ତ ପହଞ୍ଚାଇଦେବା ପାଇଁ ଏ ବ୍ୟବସ୍ଥା କମ୍ପାନୀ ମାନଙ୍କ ସହଯୋଗରେ ସରକାରଙ୍କ ଦ୍ୱାରା ବିକାଶ ନାମରେ ଚାଲୁ ରହିଛି । ଖଣିଜଭିତ୍ତିକ ଶିଳ୍ପ ଓଡ଼ିଶାରେ ଯାହା ରହିଛି ତାହା କେବଳ ପ୍ରକ୍ରିୟାକରଣ କରିବା ପର୍ଯ୍ୟନ୍ତ ସୀମିତ ।

- କୌଣସି Finished Product ଓଡ଼ିଶାରେ ତିଆରି ହେଉନି ।
- ବିଦ୍ୟୁତର ବ୍ୟବହାର ଏଠାରେ ହେଉନି କିନ୍ତୁ କୋଇଲା ଖର୍ଚ୍ଚ କରାଯାଉଛି ।
- Anciliary Industry develop କରିନାହିଁ ।
- ଖଣି ଓ ଶିଳ୍ପ ସହ ତାଳ ଦେଇ Agriculture, Tourism, Forestry, Fishing, Weaving Sectorକୁ ଯେଭଳି ଗୁରୁତ୍ ଦେବା କଥା ତାହା ଦିଆଯାଇ ନାହିଁ । କିନ୍ତୁ ଏହାର ବିକାଶ ତ ଦୂରର କଥା ଖଣି ଓ ଶିଳ୍ପ ଏହି ସବୁ ବିନାଶ କରୁଛି ।

ଓଡ଼ିଶାର ମୂଲ୍ୟବାନ ଜଙ୍ଗଲ ଜାତ ଦ୍ରବ୍ୟ, ପାଣିଜାତୀୟ ଜୀବ, ମାଛ, ଔଷଧୀୟ ବୃକ୍ଷ, କୁଟୀରଶିଳ୍ପ, ପଶୁପକ୍ଷୀ, ବୃକ୍ଷଲତା, ଆଦିକୁ ଧ୍ୱଂସ କରିବାରେ ମୁଖ୍ୟ ଭୂମିକା ନେଉଛି । ଏହାର ସୁରକ୍ଷା, ବିକାଶ ଓ ବ୍ୟବହାର ପାଇଁ କୌଣସି ଯୋଜନା ନାହିଁ । ଓଡ଼ିଶାର ଅନେକ ଐତିହାସିକ କୀର୍ତ୍ତିରାଜି, ଭ୍ରମଣସ୍ଥାନ, ପର୍ଯ୍ୟଟନସ୍ଥଳୀ ଧ୍ୱଂସ ହେବାକୁ ଯାଉଛି । ମାନବସମ୍ବଳ, ଭିତ୍ତିଭୂମି ବିକାଶ ପାଇଁ ଶିକ୍ଷା, ସ୍ୱାସ୍ଥ୍ୟ ଓ ଗ୍ରାମାଞ୍ଚଳ ଗମନାଗମନ ଉପରେ କୌଣସି ଗୁରୁତ୍ୱ ଦିଆଯାଉନାହିଁ । ଖଣି ଓ ଖଣିଭିତ୍ତିକ ଶିଳ୍ପକୁ ବିକାଶର ଏକମାତ୍ର ମାଧ୍ୟମଭାବେ ଗ୍ରହଣ କରାଯାଉଛି ଓ ଏହାର ସୁଦୂରପ୍ରସାରୀ ପ୍ରଭାବ ବିଷୟରେ କୌଣସି ଦୀର୍ଘମିଆଦୀ ଯୋଜନା ନାହିଁ ।

ରାଜ୍ୟରେ ଏକ ଲୋକକେନ୍ଦ୍ରିତ ବିକାଶ ପ୍ରକ୍ରିୟାର ବିଚାରକୁ ଉପସ୍ଥାପିତ କରିବା ସହ ସମସ୍ତ ଜନବିରୋଧି ନୀତି ଓ ଶକ୍ତିମାନଙ୍କୁ ମୁକାବିଲା କରିବା ପାଇଁ ଏକ ରାଜନୈତିକ ଇଚ୍ଛାଶକ୍ତି ଜାଗ୍ରତ କରିବାରେ ଆବଶ୍ୟକତା ରହିଛି । ବିଶେଷ ଭାବରେ ଯେଉଁମାନେ ରାଜ୍ୟର ବିକାଶ କଥା କହୁଛନ୍ତି ଓ ସଂଖ୍ୟାଧିକ ଲୋକଙ୍କ ପାଇଁ ଯୁକ୍ତି ବାଢୁଛନ୍ତି ସେ ସବୁ ସାମାଜିକ-ରାଜନୈତିକ ଶକ୍ତି ମାନଙ୍କ ରାଜ୍ୟସ୍ତରରେ ଏକ ହେବାର ଆବଶ୍ୟକତା ରହିଛି ।



ରାଜ୍ୟରେ ଜନବାଦୀ, ବାମ-ଗଣତାନ୍ତ୍ରିକ-ପ୍ରଗତିଶୀଳ ଶକ୍ତିମାନଙ୍କ କାର୍ଯ୍ୟଧାରା ରାଜ୍ୟର ବିକାଶ ପ୍ରକ୍ରିୟାକୁ ବ୍ୟାପକ ଭାବେ ପ୍ରଭାବିତ କରିପାରିବ ଯଦି ପ୍ରସ୍ତାବିତ ଖଣି ଅଞ୍ଚଳର ଜନପ୍ରତିବାଦ ଓ ଅନ୍ୟାନ୍ୟ ଖଣି ଅଞ୍ଚଳ ମାନଙ୍କରେ ହେଉଥିବା ପ୍ରତିବାଦ ଗୁଡ଼ିକ ଓଡ଼ିଶାର ରାଜନୈତିକ-ଅର୍ଥନୀତି ପ୍ରକ୍ରିୟା ମିଳିତଭାବେ ଏକ ନିର୍ଣ୍ଣୟକାରୀ ଭୂମିକା ନେଇ ପାରିବେ ଏବଂ ଏହା ଫଳରେ ବିକାଶର ସ୍ୱରୂପ ଧିରେ ଧିରେ ବଦଳି ଯାଇପାରିବ । ଏବେ ସମୟ ଆସିଛି ଖଣି ଶ୍ରମିକ, ଖଣି ପ୍ରଭାବିତ ଗ୍ରାମବାସୀ ବାସଚ୍ୟୁତ ପରିବାରମାନେ ମିଳିତଭାବେ ଖଣି ଅଞ୍ଚଳର ସମସ୍ୟାକୁ ମୁକାବିଲା କରିବା ଦରକାର । ଖଣି ଦ୍ୱାରା ପରୋକ୍ଷ ଭାବେ ପ୍ରଭାବିତ ଜଙ୍ଗଲ ଶ୍ରମିକ, କୃଷକ, ମତ୍ସ୍ୟଜୀବୀ, ଦିନମଜୁରିଆମାନେ ମଧ୍ୟ ଏହି ପ୍ରତିବାଦରେ ସାମିଲ ହେବା ଆବଶ୍ୟକ । ଏ ସମସ୍ତଙ୍କର ମିଳିତ ପ୍ରତିବାଦ ଏକ ଜନସ୍ୱାର୍ଥରକ୍ଷାକାରୀ ସ୍ଥାୟୀ ବିକାଶ ପ୍ରକ୍ରିୟାକୁ ଆଗେଇ ନେଇପାରିବ । ବାସଚ୍ୟୁତ ଥଇଥାନ ନୀତି, ପରିବେଶ ସୁରକ୍ଷା, ଜୀବନ ଜୀବିକା ଅଧିକାର, ଆଞ୍ଚଳିକ ଉନ୍ନୟନ ଓ ଶ୍ରମ ଆଇନ୍ ଆଦି କାର୍ଯ୍ୟକାରୀ କରିବା ପାଇଁ ତଥା ସମାଜର ସାମାଜିକ ଓ ଅର୍ଥନୈତିକଭାବେ ଅନୁନ୍ନତ ବର୍ଗ ପାଇଁ ଥିବା ବିଶେଷ ଆଇନଗତ ଓ ସାମ୍ବିଧାନିକ ଅଧିକାରର ସୁରକ୍ଷା ପାଇଁ ମିଳିତ ସଂଗ୍ରାମର ଆବଶ୍ୟକତା ରହିଛି ।

ଓଡ଼ିଶାର ସାମଗ୍ରିକ ସ୍ୱାର୍ଥକୁ ବିଚାରକୁ ନେଇ ଖଣି ଅଞ୍ଚଳ ଯେଉଁ ଠାରୁ ପ୍ରାକୃତିକ ସମ୍ପଦର ଲୁଣ୍ଠନ ଚାଲିଛି ସେହିଠାରୁ ହିଁ ଏହି ପ୍ରତିବାଦର ଆରମ୍ଭ ହୋଇପାରିବ । ଏହି ପ୍ରତିବାଦ ଗୋଷ୍ଠୀ କେନ୍ଦ୍ରୀତ, ଅଞ୍ଚଳ କେନ୍ଦ୍ରୀତ କିମ୍ବା ନିର୍ଦ୍ଦିଷ୍ଟ ସମସ୍ୟା କେନ୍ଦ୍ରୀତ ନହୋଇ ଏବଂ ଏକ ବ୍ୟାପକ ସାମଗ୍ରିକ ଦୃଷ୍ଟିଭଙ୍ଗୀ ବା ବିଚାରର ଧାରାରେ ହେବା ଦରକାର । ଯେଉଁ ସବୁ ଜନ ପ୍ରତିବାଦ ଚାଲିଛି ତାହା ମଧ୍ୟରେ ଏକ ସ୍ପଷ୍ଟ ରାଜନୈତିକ ବିଚାର ଓ ସୁଦୂର ପ୍ରସାରୀ ଦୃଷ୍ଟିଭଙ୍ଗୀର ବିକାଶ ଘଟିବା ଦରକାର ।



# ବିକାଶ, ଖଣି ଓ ଜନଆନ୍ଦୋଳନ

*ଦେବ ରଂଜନ*

ଅଧିକାଂଶଙ୍କ ମନରେ ବିରୁଡି ବସା ବାନ୍ଧିଲା ପରି ଏକଥା ବସା ବାନ୍ଧିଯାଇଛି ଯେ ଦେଶର ବିକାଶ ଏ ଦେଶର ଖଣିଜ ସମ୍ପଦ ଉପରେ ନିର୍ଭରକରେ ଅର୍ଥାତ, ଖଣିଜ ସମ୍ପଦର ସଦୁପଯୋଗରେ ହିଁ ଦେଶର ବିକାଶ ସମ୍ଭବ । ଏ କଥା କାହିଁ କେତେ ବର୍ଷ ହେଲାଣି ଶୁଣାଗଲାଣି। ଏହା ସହିତ ଦେଶର ଖଣିଜ ସମ୍ପଦ ଧିରେଧିରେ ସରିବାକୁ ବସିଲାଣି । ଅଥଚ କାହିଁକି ଏ ଦେଶର ଗରୀବି ଓ ବେକାରୀ କମିବା ବଦଳରେ ବଢ଼ିବାରେ ଲାଗିଛି ? ସାଙ୍ଗେ ସାଙ୍ଗେ ଅର୍ଥନୀତିଜ୍ଞମାନେ ଉତ୍ତର ଦେବେ ଜନସଂଖ୍ୟା ବଢୁଛି। ମାତ୍ର ଜନସଂଖ୍ୟାର ଘନତ୍ୱ ଧିରେଧିରେ କମିବାରେ ଲାଗିଛି । ତେବେ କାହିଁକି ଗରୀବି ବଢୁଛି ? ଖଣି ଖାଦାନ ସହିତ ଦାରିଦ୍ର୍ୟର ସମ୍ପର୍କକୁ ନେଇ ପ୍ରଶ୍ନ ମନକୁ ଆସିବା ସହିତ ଆହୁରି ଅନେକ ପ୍ରଶ୍ନ ଯୋଡା ଯୋଡି ହୋଇ ମନକୁ ଆସି ଯାଉଛି । ଯେମିତିକି ଖଣି ଖାଦାନ ତ ରହିଛି ମାତ୍ର ସେସବୁ ଖଣିଜ ସମ୍ପଦ ଯାଉଛି କୁଆଡେ ? କାହିଁକି ତାହା ଗରୀବି ଦୂର କରିବାରେ ଅସମର୍ଥ ? କିଏ ତେବେ ତାର ସୁବିଧା ନେଉଛି ? କେଉଁମାନେ ତେବେ ଖଣିଜ ସମ୍ପଦ ହରଣ କରୁଛନ୍ତି ଇତ୍ୟାଦି । ଏହା ସହିତ ଆହୁରି କିଛି ପ୍ରଶ୍ନ ଆନ୍ଦୋଳିତ କରୁଛି ଯେମିତିକି ଗଲା ଦଶନ୍ଧି ଧରି ଚାଲିଥିବା ଖଣି ବିରୋଧି ଆନ୍ଦୋଳନ । ଏସବୁ ଆନ୍ଦୋଳନ ତେବେ ପୁଣି କାହିଁକି ମୁଣ୍ଡ ଟେକୁଛି ? ଏ ସବୁକୁ ନେଇ ଆଲୋଚନା କରିବା ଏ ଲେଖାର ଉଦ୍ଦେଶ୍ୟ।

ଭାରତର ଖଣି ମାନଙ୍କର ଇତିହାସ ପ୍ରାୟ ଚାରିହଜାର ବର୍ଷର ପୁରୁଣା । ଭାରତରେ ହୀରା, ଜିଙ୍କ ଓ ଲୁହାର ବ୍ୟବହାର ବହୁ ପୁରାତନ । ଏହାକୁ ବ୍ୟବସାୟିକ ଭାବରେ ମାତ୍ର ଗଲା କିଛି ବର୍ଷ ହେଲା ଆରମ୍ଭ ହୋଇଛି । ରାଜାମାନେ ସ୍ୱତନ୍ତ୍ର ପଟ୍ଟା ଦ୍ୱାରା ଏହାକୁ ଲିଜ୍ ଆକାରରେ ଦେଉଥିଲେ । ଭାରତରେ ସ୍ୱାଧିନତା ପରେ ଖଣିକୁ ଏକ ରେଭିନ୍ୟୁ ଆକାରରେ ନିଆଗଲା ଓ ଖଣିର ସଂଖ୍ୟା ସହିତ ଉତ୍ପାଦନର ମାତ୍ରା ମଧ୍ୟ ବଢ଼ିବାରେ ଲାଗିଲା ।

ସ୍ୱାଧୀନତା ପରେ ଯେଉଁ ମିଶ୍ର ଅର୍ଥନୀତିର ପ୍ରଚଳନ ହେଲା ଏଥିରେ ସରକାରୀ ଉଦ୍ୟୋଗ ମୁଖ୍ୟ ଭାବରେ ଖଣି କ୍ଷେତ୍ରରେ ଦେଖାଗଲା । ପ୍ରାୟତଃ ଟାଟାକୁ ଛାଡିଦେଲେ ଅଧିକାଂଶ ଖଣି ଉଦ୍ୟୋଗ ସରକାରୀ ପରିଚାଳନା ଭିତରେ ଚାଲିଥିଲା । ସେମାନଙ୍କ ମଧ୍ୟରେ ରାଉରକେଲା ଷ୍ଟିଲ ପ୍ଲାଣ୍ଟ, କୁଦ୍ରୁମୁଖ ମାଇନିଂ (କର୍ଣ୍ଣାଟକ), ଭିଲାଇ ଷ୍ଟିଲ (ମଧ୍ୟ ପ୍ରଦେଶ ବା ବର୍ତ୍ତମାନର ଛତିଶଗଡ) ପ୍ରମୁଖ ଅଟେ ।



ଭାରତରେ ଖଣିରୁ ଉତ୍ପାଦନ ୫୦ ଦଶକରେ ଯାହାକି ୭୦କୋଟି ଟଙ୍କା ଥିଲା ଓ ୨୦ଟି ଖଣିଜ ପଦାର୍ଥ ଉତ୍ପାଦନ ହେଉଥିଲା ଏହା ୧୯୯୬-୯୭ ବେଳକୁ ୮୪ପ୍ରକାରର ଖଣିଜ ପଦାର୍ଥରୁ ୩୩,୦୭୫ କୋଟି ଟଙ୍କା ଉତ୍ପାଦନ ହୋଇଥିଲା । ଏବେ ଭାରତରେ ୩୪୯୦ଟି ଖଣି (ସରକାରୀ ଲିଜ୍ ଅନୁସାରେ) କାର୍ଯ୍ୟକାରୀ ହେଉଛି ।

ଏତିକି ସମୟ ମଧ୍ୟରେ ଏହି ସବୁ ଖଣି ଦ୍ୱାରା କେତେ ଲୋକ ବିସ୍ଥାପିତ ହୋଇଛନ୍ତି ତାର ପ୍ରକୃତ ହିସାବ ନାହିଁ । ସ୍ୱାଧୀନତା ଠାରୁ ୧୯୯୫ ମଧ୍ୟରେ ଖଣି ପାଇଁ ଓଡ଼ିଶାରେ ପ୍ରାୟ ଏକ ଲକ୍ଷ ଲୋକ ବିସ୍ଥାପିତ ହେବା କଥା ସର୍ଭେରୁ ଜଣାପଡେ । ଚାରିଲକ୍ଷ ଏକର ଚାଷ ଜମି ଓ ଜଙ୍ଗଲ ଜମି ଖଣି ଦ୍ୱାରା ଅକ୍ତିଆର ହୋଇଛି । ସମାନ ପ୍ରକାରର ସ୍ଥିତି ସାରା ଭାରତରେ ଦେଖା ଯାଉଛି । ଖଣି କ୍ଷେତ୍ରରେ ପୁଞ୍ଜିର ପ୍ରସାର ହେତୁ ସେଠାରେ ଆଉ ଏକ ସ୍ୱାଧିନ ଅର୍ଥନୀତି (Indigenous Economy)କୁ ବଢ଼ିବାରେ ସୁଯୋଗ ଦେଇନାହିଁ । ହଜାର ହଜାର ହେକ୍ଟର ଚାଷ ଜମି ଖଣି ଖାଦାନ ପାଇଁ ବ୍ୟବହୃତ ହେବା ସହିତ ସେଥିରେ ଚାଷ କରି ଓ ନିର୍ଭର କରୁଥିବା ହଜାର ହଜାର ଚାଷୀ ପରବର୍ତ୍ତୀ ସମୟରେ ଶ୍ରମଜୀବୀ ହୋଇଛନ୍ତି । ଏହା ମୁଖ୍ୟତଃ ସରକାରୀ ଉଦ୍ୟୋଗ ଦ୍ୱାରା ହୋଇଛି ।

ଏହି ସବୁ ସରକାରୀ ଉଦ୍ୟୋଗ ଦ୍ୱାରା ସ୍ଥାନୀୟ ଜନସାଧାରଣମାନେ କିଛି କମ୍ ଅତ୍ୟାଚାରିତ ହୋଇନାହାଁନ୍ତି । ମଧ୍ୟ ପ୍ରଦେଶର ସିଂଗ୍ରୌଲିଠାରେ ଏନ୍.ଟି.ପି.ସି.ର କୋଇଲା ଖଣି, କର୍ଣ୍ଣାଟକର କୁର୍ଦ୍ଦମୁଖ ଲୁହାଖଣି, ବର୍ତ୍ତମାନର ଝାଡଖଣ୍ଡର ଜାଦୁଗୁଡାଠାରେ ୟୁରାନିୟମ ଖଣି ଓ ତାଳଚେରର କୋଇଲା ଖଣି ଇତ୍ୟାଦି ଯେବେ ପ୍ରତିଷ୍ଠା ହେଲା ସେଠାରେ ଲୋକଙ୍କୁ ଯେ କେବଳ ବିସ୍ଥାପିତ କରିଛି ତା ନୁହେଁ, ବାକି ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ଜୀବନ ମଧ୍ୟ ଧ୍ୱସ୍ତ ବିଧ୍ୱଂସ୍ତ ହୋଇଛି । ବାକି ବଞ୍ଚିଥିବା ଲୋକ କରିବେଶ ପ୍ରଦୂଷଣ ଓ ଉପଯୁକ୍ତ ଚିକିତ୍ସାର ଅଭାବ ହେତୁ ଏବେ ବି ସେହି ସବୁ ପ୍ରକଳ୍ପ ଦ୍ୱାରା ପ୍ରଭାବିତ ହେଉଛନ୍ତି । ଫଳରେ ସେହିସବୁ ଅଞ୍ଚଳରେ ଗଲାଦଣ୍ଡିଧରି ଖଣିକୁ ବନ୍ଦ କରିଦେବା ପାଇଁ ଆନ୍ଦୋଳନ ସବୁ ମୁଣ୍ଡଟେକୁଛି । ଯାଦୁଗୁଡା ଓ କୁର୍ଦ୍ଦମୁଖ ଅଞ୍ଚଳ ଏହାର ଉଦାହରଣ ଅଟେ ।

ତେବେ ଜାତୀୟ ବିକାଶ କ୍ଷେତ୍ରରେ ଏହି ସବୁ ଖଣି ଉଦ୍ୟୋଗର ଅବଦାନ ହେଲା ଚାକିରୀ ଯୋଗାଇବା ଓ ଖଣିଜ ପଦାର୍ଥ ରପ୍ତାନି କରି ଦେଶର ଆୟ ବଢ଼ାଇବା । ଆଶ୍ଚର୍ଯ୍ୟର କଥା ଯେ ନବେ ଦଶକର ଆଧୁନିକୀକରଣ ଓ ନୂତନ ଆର୍ଥିକ ନୀତିର ପ୍ରଭାବରେ ଖଣି କ୍ଷେତ୍ରରେ ମିଳୁଥିବା ଚାକିରୀ କେବେଠାରୁ ବନ୍ଦ ହୋଇଗଲାଣି । ୧୯୮୬ରେ ଦୈନିକ ହାରାହାରି ୭୮୯୨୯୫ଲୋକ ଖଣି ଉଦ୍ୟୋଗରେ କାମ କରୁଥିଲେ । ୧୯୯୫-

୯୬ରେ ଏହା ୭୪୩୪୦୪କୁ ଖସି ଆସିଛି । ଭିଲାଇ ଷ୍ଟିଲ ପ୍ଲାଣ୍ଟରେ ଅଶିଦଶକରେ ଯେଉଁଠି ୯୨୦୦୦ଲୋକ, ତତ୍ ସଂଲଗ୍ନ ଖଣି କ୍ଷେତ୍ରରେ ୧୫୦୦୦ଲୋକ କାମ କରୁଥିଲେ, ବର୍ତ୍ତମାନ ପ୍ଲାଣ୍ଟରେ ୪୦୦୦୦ ଓ ଖଣିରେ ୮୦୦୦ ଲୋକ କାମ କରୁଛନ୍ତି । ରାଉରକେଲା ଷ୍ଟିଲ ପ୍ଲାଣ୍ଟ ଓ ଖଣିରେ ୬୪୦୦୦ରୁ ଏବେ ୪୦୦୦୦ଲୋକ ଓ ବହୁଶୀଘ୍ର ଏହା ପୁଣି ୨୪୦୦୦କୁ ଖସି ଆସିବାର ସମ୍ଭାବନା ରହିଛି । ଅର୍ଥାତ ଷାଠିଏ ଦଶକରେ ଭିଲାଇ ଷ୍ଟିଲ ପ୍ଲାଣ୍ଟ ଦ୍ୱାରା ସମୁଦାୟ ୩୧୦୦୦ଲୋକ ବିସ୍ଥାପିତ ହୋଇଥିଲାବେଳେ ରାଉରକେଲା ଷ୍ଟିଲ ପ୍ଲାଣ୍ଟ ଦ୍ୱାରା ୨୪୦୦୦ ଲୋକ ବିସ୍ଥାପିତ ହୋଇଥିଲେ । ଖଣି ଉଦ୍ୟୋଗରେ ମାତ୍ର ୪୦ବର୍ଷର ଇତିହାସରେ ନୂତନ ସମ୍ଭାବନାର ଆଶା ମଉଳି ଯିବା ସହିତ ଛଟେଇର ଧାରା ଆରମ୍ଭ ହୋଇଗଲାଣି । ଆଜି ଛଟେଇର ପ୍ରଥମ ଶିକାର ସେହିମାନେ ହେଉଛନ୍ତି ଯେଉଁମାନେ ଅତୀତରେ ନିଜର ଜମି ହରାଇ କମ୍ପାନୀ ଚାକିରୀ କରିଥିଲେ । କାରଣ ସେହିମାନେ ହିଁ ସବୁଠାରୁ ନିମ୍ନ ଶ୍ରେଣୀରେ ଅଛନ୍ତି ।

ଏହା ସହିତ ଆଉ ଏକ ଦୁଃଖଦ କଥା ହେଲା ଯେ ବିକାଶଶୀଳ ଦେଶ ମାନଙ୍କୁ ଯେଉଁ ଖଣିଜ ସମ୍ପଦ ରପ୍ତାନି ହେଉଥିଲା ତାହାର ପ୍ରକୃତ ମୂଲ୍ୟ କେବେବି ନମିଳିବା । ବିକାଶଶୀଳ ରାଷ୍ଟ୍ର ମାନଙ୍କର ରପ୍ତାନି ଗଲା ୨୦ବର୍ଷ ଭିତରେ ୩୦% ବଢ଼ିଥିବା ବେଳେ ସେହି ରପ୍ତାନୀର ପ୍ରକୃତ ମୂଲ୍ୟ ମାତ୍ର ୪୦% ବଢ଼ିଛି ଅର୍ଥାତ୍ ଅଧିକ ଖଣିଜ ଦ୍ରବ୍ୟ ରପ୍ତାନି ହୋଇଛି ମାତ୍ର ମୂଲ୍ୟ ସେହି ଅନୁପାତରେ ମିଳିନାହିଁ ।

ଏବେ ନବେଦଶକପରେ ଏହି ସବୁ ସରକାରୀ ଉଦ୍ୟୋଗ ନିଜସ୍ୱ ଉଦ୍ୟୋଗ ବଢ଼ିବାରେ ସହାୟକ ହେଉଛି । ନିଜସ୍ୱ ଉଦ୍ୟୋଗ ମଧ କୌଣସି ଦୃଷ୍ଟିରୁ ରାଷ୍ଟ୍ରର ହିତ ପାଇଁ ନୁହଁନ୍ତି । ଭାରତର ୩୫୦ବଡ କମ୍ପାନୀର ପ୍ରକୃତ ବିକ୍ରି ଗଲା ୨୦ବର୍ଷ ମଧରେ ୨୪% ବଢ଼ିଥିବା ବେଳେ ସେମାନଙ୍କର ଟିକସ ୩୦% କମିବାରେ ଲାଗିଛି । ଅନ୍ୟପଟରେ ୧୯୭୦ ମସିହାରେ ଯେତେବେଳେ ସମୁଦାୟ ଜନସଂଖ୍ୟାର ଏକଭାଗ ଲୋକ ୧୮% ସମ୍ପତ୍ତି ମାଡି ବସିଥିଲେ ସେତେବେଳେ ୧୯୯୬ ବେଳକୁ ସେହି ଏକ ଭାଗଲୋକ ୪୦% ସମ୍ପତ୍ତି କବ୍‌ଜା କରିଛନ୍ତି । ତେଣୁ ଖଣି ଦେଶର ଅର୍ଥନୀତିକୁ ସମୃଦ୍ଧ କରିବାରେ ସାହାଯ୍ୟ କରିଥାଏ ବୋଲି ଯେଉଁ ଅବଧାରଣା ଆମର ଅର୍ଥଶାସ୍ତ୍ରୀ ଓ ସମାଜଶାସ୍ତ୍ରୀମାନେ ଦେଇଚାଲିଥିଲେ ତାହା କ୍ରମଶଃ ଭୁଲ ପ୍ରମାଣିତ ହେବାରେ ଲାଗିଛି । ଆମର ସମୃଦ୍ଧିର ଆଶା ବେଶ୍ କିଛି ଲୋକଙ୍କୁ କେବଳ ଅଧିକରୁ ଅଧିକ ସମୃଦ୍ଧ କରୁଛି । ଆଉ ମଧବିତ୍ତ ବର୍ଗ ସେହି ଭିତରେ ନିଜପାଇଁ କେବଳ ଏକ ସ୍ଥାନଟିଏ ସୁରକ୍ଷିତ ରଖିବା ପାଇଁ ଚେଷ୍ଟା କରୁଛି ।

ଏବେ ଉଦାରୀକରଣ ଓ ଘରୋଇକରଣ ପରିବେଶ ଭିତରେ ଏହି ସବୁ ସରକାରୀ ଉଦ୍ୟୋଗର ଘରୋଇକରଣର କଥା ଉଠୁଛି । ସେଠି ମଧ୍ୟ ଯାନ୍ତ୍ରିକ ବା କୁଶଳୀ ଚାକିରୀ ସୃଷ୍ଟି ହେବ ବୋଲି ଯୁକ୍ତି କରୁଥିବା ଅର୍ଥନୀତି ସରକାରୀ ଉଦ୍ୟୋଗ ଦ୍ୱାରା କ୍ଷତିଗ୍ରସ୍ତ ଜନଗଣଙ୍କ କଥା କେବେ କିନ୍ତୁ ମୁହଁରେ ଧରୁନାହିଁ । ନାଲକୋର ପଞ୍ଚପଟମାଳୀ ଚାରିପାଖର ଲୋକ ପାଣି ଅଭାବରୁ ଗାଁ ଛାଡୁଥିବା, ତାଳଚେରରେ ପ୍ରଦୂଷଣ ଓ ମହାମାରୀ ଯକ୍ଷ୍ମାରେ ଆକ୍ରାନ୍ତ ଗରିବ ଲୋକ, କର୍ଣ୍ଣାଟକର କୁଦ୍ରେମୁଖ ମାଇନିଂ ଦ୍ୱାରା ତୁଙ୍ଗ ଓ ଭଦ୍ରାନଦୀର ଦୂଷିତ ଜଳରେ ଆକ୍ରାନ୍ତ ୮ଟି ଜିଲ୍ଲାର ଅଧିବାସୀ କିମ୍ବା ଝାଡଖଣ୍ଡର ଜାଦୁଗୁଡାରେ ୟୁରାନିୟମ ମାଇନିଂର ବିକିରଣ ଦ୍ୱାରା କ୍ୟାନ୍‌ସର ଓ ଶାରିରୀକ ବିକଳାଙ୍ଗ ଲୋକଙ୍କ ଚିତ୍କାର ଯେମିତି କାହାର କାନକୁ ଶୁଣାଯାଉନାହିଁ । ଏହା ପରେବି ଘରୋଇକରଣର ପ୍ରଭାବରେ ଏବେ ସବୁ ଦେଶୀ ଓ ବିଦେଶୀ କମ୍ପାନୀ ମାନଙ୍କର ଖଣି କ୍ଷେତ୍ରରେ ଆସିବା ବଢ଼ିବାରେ ଲାଗିଛି ।

ଭାରତର ଖଣିଜ ଦ୍ରବ୍ୟର ପରିମାଣ ଶେଷ ହେବାରେ ଲାଗିଲାଣି । ପ୍ରକୃତି ଯେଉଁ ଖଣିଜ ଦ୍ରବ୍ୟକୁ କୋଟି କୋଟି ବର୍ଷ ଲାଗି ତିଆରି କରିଥିଲା, ମଣିଷ ସମାଜ ତାକୁ ଶୀଘ୍ର ସାରିବାକୁ ବସିଲାଣି । ଖଣି ବିଭାଗର ୧୯୯୬-୯୭ ତଥ୍ୟ ଅନୁସାରେ ଅଶୋଧିତ ତୈଳ ୧୫ବର୍ଷରେ, ପ୍ରାକୃତିକ ଗ୍ୟାସ ୨୭ବର୍ଷରେ, କୋଇଲା ୨୧୩ବର୍ଷରେ, ତମ୍ବା ୬୪ବର୍ଷରେ, ସୁନା ୪୭ବର୍ଷରେ, ଲୌହପିଣ୍ଡ ୧୩୫ବର୍ଷରେ, କ୍ରୋମାଇଟ ୫୨ବର୍ଷରେ, ମାଙ୍ଗାନିଜ ୩୬ବର୍ଷରେ ସରିଯିବ । କେବଳ ବକ୍‌ସାଇଟ୍ ବର୍ତ୍ତମାନର ଉତ୍ପାଦନ କ୍ଷମତା ଅନୁସାରେ ଆଉ ମାତ୍ର ୧୨୫ବର୍ଷ ଭିତରେ ସରିଯିବ । ଅର୍ଥାତ୍ ଏକବିଂଶ ଶତାବ୍ଦୀ ସରିଲା ବେଳକୁ ଭାରତରେ ଅଧିକାଂଶ ଖଣିଜ ଦ୍ରବ୍ୟ ସରିଯାଇଥିବ ।

ସରକାରୀ ଉଦ୍ୟୋଗ ମାଧ୍ୟମରେ ଖଣିଜ ଦ୍ରବ୍ୟର ଉତ୍ତୋଳନ କରାଯାଉଥିବାବେଳେ ଯୁକ୍ତି ଦେଖାଗଲା ଯେ ଦେଶର ବିକାଶ ଏହାଦ୍ୱାରା ସମ୍ଭବ । ଦେଶର ବିକାଶକୁ ଛାଡି ଦିଆଗଲା । ଏବେ ସେହି ସବୁ ଉଦ୍ୟୋଗକୁ ବଞ୍ଚାଇ ରଖିବା ପାଇଁ ପୁଣି ଘରୋଇକରଣ, ଉଦାରୀକରଣ, ପୁଞ୍ଜିର ପ୍ରତ୍ୟାହାର କଥା କୁହାଗଲାଣି । ବାଲ୍‌କୋ ପରେ ନାଲକୋ, ଏଚ୍.ପି.ସି.ଏଲ., ବି.ପି.ସି.ଏଲ.ର କଥା ଉଠୁଛି । ଏହା ସହିତ ବଳିଯାଇଥିବା ଖଣିଜଦ୍ରବ୍ୟର ଉତ୍ତୋଳନ ପାଇଁ ଏବେ ବିଭିନ୍ନ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ଦେଇଦେବାର ଯୋଜନା ଚାଲିଛି । ୧୯୯୭ର ତଥ୍ୟ ଅନୁସାରେ ୫୦ଟି ପ୍ରକଳ୍ପ ମଧ୍ୟରୁ ୩୨ଟି ପ୍ରକଳ୍ପ କେବଳ ବହୁରାଷ୍ଟ୍ରୀୟ କମ୍ପାନୀକୁ ଦିଆଯାଇଛି । ସେଥିରୁ ଯୁକ୍ତରାଷ୍ଟ୍ର ଆମେରିକା ୮, କାନାଡ଼ା ୩, ଅଷ୍ଟ୍ରେଲିଆ ୧୦, ଇଂଲଣ୍ଡ ୬ ଓ ଦକ୍ଷିଣ ଆଫ୍ରିକାର ୪ଟି କମ୍ପାନୀମାନେ ଅନ୍ତର୍ଭୁକ୍ତ ।

ସେଥିମଧ୍ୟରୁ ବକ୍ସାଇଟ୍ ୭, ଅନ୍ୟାନ୍ୟ ବେସ୍ ମେଟାଲ ୯, ହୀରା ୪, ସୁନା ୨, ଲୁହା ଓ ଅନ୍ୟାନ୍ୟ ରହିଛି । ପ୍ରମୁଖ ବହୁରାଷ୍ଟ୍ରୀୟ କମ୍ପାନୀ ମଧ୍ୟରେ ଅଷ୍ଟ୍ରେଲିଆର ବି.ଏଚ୍.ପି, ଇଂଲଣ୍ଡର ରିଓଟିଣ୍ଟୋ, ଦକ୍ଷିଣ ଆଫ୍ରିକାର ଦେ ବିୟରସ୍, ଆମେରିକାର ଆଲକ୍ୱା, କାନାଡାର ଆଲକାନ୍ ପ୍ରମୁଖ ଅଟନ୍ତି ।

ଏତେ ବର୍ଷର ଔଦ୍ୟୋଗିକ ବିକାଶ ପରେ, ଯଦି ସରକାରୀ ତଥ୍ୟକୁ ଆମେ ବିଶ୍ୱାସକୁ ନେବା ତେବେ ପ୍ରତି ୧୦୦୦ରେ ଜନ୍ମ ହେବା ମାତ୍ରେ ଦ୍ରୁତ ଯତ୍ନର ଅଭାବରୁ ୬୫ ପିଲା ମରିଯାଇଥାନ୍ତି । ଏକ ବର୍ଷରୁ ପାଞ୍ଚ ବର୍ଷ ମଧ୍ୟରେ ଆଉ ୯୮ ପିଲା ମରିଥାନ୍ତି । ସେହି ବୟସର ସମସ୍ତ ଛୁଆ ମଧ୍ୟରୁ ୫୩% ଛୁଆ ଏବେବି ସାଧାରଣ ଓଜନ ଠାରୁ କମ୍ । ସମଗ୍ର ଭାରତରେ ଏବେ ୨୬% ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ଥିବା ବେଳେ ୫୦.୫୬% ଅଶିକ୍ଷିତ ଅଛନ୍ତି । ମଜାର କଥାଯେ ଏତେ ବଡ ବଡ ପ୍ରକଳ୍ପ ଓ ତାପଜ କେନ୍ଦ୍ର ଥାଇ ମଧ୍ୟ ଏବେ ବି ୬୦% ଗାଁକୁ ବିଦ୍ୟୁତ୍ ସଂଯୋଗ ନାହିଁ । ଏସବୁ ସମସ୍ୟା ପାଇଁ ଅର୍ଥନୀତିଜ୍ଞ ମାନଙ୍କ ପାଖରେ ପ୍ରତ୍ୟେକ ସମସ୍ୟାର ପୃଥକ ପୃଥକ ପ୍ରତିକାର ମଧ୍ୟ ରହିଛି । କିନ୍ତୁ ଏହା ଚିନ୍ତା କରିବାର କଥାଯେ ଏତେବର୍ଷର ରାଷ୍ଟ୍ରୀୟ ଉଦ୍ୟୋଗ ପରେ ବି ଏହି ଅବସ୍ଥା ଆହୁରି ଖରାପ ହୋଇ ଚାଲିଥିବା ବେଳେ ବହୁରାଷ୍ଟ୍ରୀୟ କମ୍ପାନୀ ଦ୍ୱାରା ଉଦ୍ୟୋଗୀକରଣକୁ ଚାଲୁରଖିଲେ ସେହି ପରିସ୍ଥିତିରେ ପରିବର୍ତ୍ତନ ଘଟିବ କି ଦ୍ରୁତ ଅବକ୍ଷୟ ହେବ ।

ଓଡ଼ିଶାର ଦାରିଦ୍ର୍ୟକଥା ଚିନ୍ତା କଲାବେଳେ ଆଲୋଚନାରେ ଆସେ "ବିରାଟ ଐତିହ୍ୟ, ସଂସ୍କୃତି ସମ୍ପନ୍ନ, ସ୍ୱର୍ଣ୍ଣପ୍ରସୂ ଖଣିଜ ସମ୍ପଦ, ବଣ ଜଙ୍ଗଲ ଏବଂ ନଦନଦୀରେ ପରିପୂର୍ଣ୍ଣ ଓଡ଼ିଶା ତାର ପ୍ରାକୃତିକ ସମ୍ପଦର ସଦୁପଯୋଗର ଅଭାବ ହେତୁ ଆଜି ଦେଶର ଦରିଦ୍ରତମ ତଥା ସବୁଠାରୁ ଅନୁନ୍ନତ ରାଜ୍ୟର କଳଙ୍କ ବହନ କରୁଛି" । ଏହା କ୍ଷୋଭର ସହିତ କହିଲାବେଳେ ଖଣିଜ ସମ୍ପଦର "ସଦ୍ ବିନିଯୋଗ" ଉପରେ ସମସ୍ତ ଚିନ୍ତନ ବର୍ଗର ଆଖି ପଡିଥାଏ । ସରକାରୀ, ଉଦ୍ୟୋଗ ଅଥବା ନିଜସ୍ୱ ଉଦ୍ୟୋଗ ମାଧ୍ୟମରେ ଖଣିଜ ସମ୍ପଦର "ସଦ୍ ବିନିଯୋଗ" କଥା ଆଜି ଚର୍ଚ୍ଚା ହେଉଛି ।

ଏହାର ସୁବିଧାରେ ରାୟଗଡ଼ାରେ ଆଲ୍‌କାନ୍, ଆଲକ୍ୱା, ଆଦିତ୍ୟ ବିରଲା କମ୍ପାନୀ ବକ୍ସାଇଟ୍ ପାଇଁ ଧାଡି ଲଗାଇଲା ବେଳେ କଳାହାଣ୍ଡିର ଷ୍ଟେରଲାଇଟ୍ କମ୍ପାନୀ, ପାରାଦ୍ୱୀପରେ ଇଣ୍ଡିଆନ୍ ଅଏଲ୍ କର୍ପୋରେସନ୍ ସହିତ ଆମେରିକା ଅଧିନସ୍ଥ କୁଏତ୍ ପେଟ୍ରୋଲ କର୍ପୋରେସନ୍, ହୀରା ସନ୍ଧାନ ପାଇଁ ବଲାଙ୍ଗୀର, ନୂଆପଡା ଅଞ୍ଚଳରେ ଦେ ବିୟର୍ସ, କେଉଁଝରରେ ଲୁହା ପାଇଁ ରିଓଟିଣ୍ଟୋ ଆଦି କମ୍ପାନୀ ଏବେ ଧାଡିରେ ଅଛନ୍ତି । ଆଗକୁ ଆହୁରି

କମ୍ପାନୀ ଆସିବାର ଅଛି । ହେଲେ ଆମର ସମସ୍ୟାର ସମାଧାନ ପାଇଁ କୁମ୍ଭୀର କାନ୍ଦଣା କେବଳ ବହୁରାଷ୍ଟ୍ରୀୟ କମ୍ପାନୀର ପ୍ରସାରରେ ସାହାଯ୍ୟ କରୁଛି । କ୍ରୋମାଇଟ୍ ଓ ଲୁହାପଥର ପାଇଁ ଟାଟା ଓ ଜିନ୍ଦଲର ମାତପିଟ ପଛରେ ସେମାନଙ୍କ ଲାଭ ହିଁ ଉଦ୍ଦେଶ୍ୟ ।

ଓଡ଼ିଶାରେ ବକ୍ସାଇଟ୍ କୋରାପୁଟ-ବଲାଙ୍ଗୀର-କଳାହାଣ୍ଡି (କେ.ବି.କେ) ଅଞ୍ଚଳରେ ଥିବା (ସାରା ଭାରତର ୬୯.୭%)ବେଳେ କ୍ରୋମାଇଟ୍ ଯାଜପୁର, କେଉଁଝର, ଢେଙ୍କାନାଳ ଅଞ୍ଚଳରେ (୯୮%)ଅଛି । କୋଇଲା, ଢେଙ୍କାନାଳ ଠାରୁ ଆରମ୍ଭକରି ଅନୁଗୁଳ, ସମ୍ବଲପୁର, ଝାରସୁଗୁଡା ଓ ସୁନ୍ଦରଗଡଠାରେ (୨୩%)ଥିବା ବେଳେ ଲୁହାପଥର କେଉଁଝର, ସୁନ୍ଦରଗଡ, ଯାଜପୁର ଓ ମୟୁରଭଞ୍ଜ ଜିଲ୍ଲାରେ (୨୬%) ଅଛି । ସେହିପରି ମାଙ୍ଗାନିଜ କେଉଁଝର ଓ ସୁନ୍ଦରଗଡ ଜିଲ୍ଲାରେ, ଗ୍ରାଫାଇଟ୍ ବରଗଡ, ବଲାଙ୍ଗୀର ଓ ନୁଆପଡା ଅଞ୍ଚଳରେ ରହିଛି । ଏହି ସବୁକୁ ଉତ୍ତୋଳନ କରିବା ପାଇଁ ବହୁ ଦେଶୀ ଓ ବିଦେଶୀ କମ୍ପାନୀମାନେ ଆସୁଛନ୍ତି । ଏହାଦ୍ୱାରା କଣ ଆମର ଦାରିଦ୍ର୍ୟ ବଦଳିବ କି ? ଆମର ଗରୀବି ଓ ବେକାରୀ ଚାଲିଯିବ କି ? ନା କେବଳ ଆମର ଖଣିଜ ଦ୍ରବ୍ୟ ହିଁ ସରିବ ?

ଖଣି ଉଦ୍ୟୋଗ କ୍ଷେତ୍ରରେ ବହୁ ରାଷ୍ଟ୍ରୀୟ କମ୍ପାନୀ ମାନଙ୍କର ରାଜତ୍ୱ କିଛି ନୂଆ ନୁହେଁ । ସରକାରୀ ଉଦ୍ୟୋଗର ଯେଉଁ କେତେକ ବୈଚାରିକ ଭାବନା ଟିକକ ରହିଛି ଯେମିତିକ ଶ୍ରମିକ ମାନଙ୍କର ସୁରକ୍ଷା ପାଇଁ ଟ୍ରେଡ ୟୁନିୟନ, (ଅବଶ୍ୟ କେବଳ ସଂଗଠିତ କ୍ଷେତ୍ରପାଇଁ ଯାହାକି ସମୁଦାୟ ଶ୍ରମିକଙ୍କର ୧୦%ରୁ ମଧ କମ୍) ପରିବେଶ ସୁରକ୍ଷା ପାଇଁ କିଛି ବ୍ୟବସ୍ଥା, ସଂବିଧାନର ପଞ୍ଚମ ଅନୁଚ୍ଛେଦ ଅନୁସାରେ ସାଧାରଣ ବର୍ଗଙ୍କୁ କିଛି ସୁରକ୍ଷା ମିଳିଥାଏ । ନିଜସ୍ୱ ଉଦ୍ୟୋଗ କ୍ଷେତ୍ରରେ ସେ ସବୁ ସୁବିଧା ମଧ କ୍ୱଚିତ୍ତ ଦେଖାଯାଇଥାଏ । ଆଜିର ବିଶ୍ୱୀକରଣ ପରିପ୍ରେକ୍ଷିରେ ଏହା ଆହୁରି ସତ୍ୟ ଯେ ବିଭିନ୍ନ ବହୁରାଷ୍ଟ୍ରୀୟ ଉଦ୍ୟୋଗର ପ୍ରବେଶ ସହିତ ସାଧାରଣ ମାନବିକ ଅଧିକାର ମଧ ପ୍ରଚଣ୍ଡ ଭାବରେ ହତ୍ୟା ହୋଇଛି ।

ଏହି ସମସ୍ତ ବହୁରାଷ୍ଟ୍ରୀୟ କମ୍ପାନୀ ମାନଙ୍କର ବିପଦପୂର୍ଣ୍ଣ ଇତିହାସ ରହିଛି । ବି.ଏଚ୍.ପି. କମ୍ପାନୀର ଅଷ୍ଟ୍ରେଲିଆରେ ଷ୍ଟିଲ କ୍ଷେତ୍ରରେ ଏକ ଚାଟିଆ ଅଧିକାର ରହିଛି । ଏହା ୫୦ଟି ଦେଶରେ ପୁଞ୍ଜି ବିସ୍ତାର କରିସାରିଲାଣି । ପପୁଏ ନ୍ୟୁ ଗୁଏନାର ମିନେରାଲ ପଲିସିକୁ ସିଧାସଳଖ ଏହି କମ୍ପାନୀ କରିଥିବା କଥା ବହୁତ ଥର ଜଣାପଡିଲା । ରିଓଟିଣ୍ଟୋ କମ୍ପାନୀ ସାରା ପୃଥିବୀର ଆଦିବାସୀଙ୍କ ପାଇଁ ଦୃତକମ୍ପନ ସୃଷ୍ଟି କରିଛି । ଅଷ୍ଟ୍ରେଲିଆର ଓ୍ୱେକ୍



ଆଦିବାସୀଠାରୁ ଆରମ୍ଭକରି ଲାଟିନ୍ ଆମେରିକାର ଆଦିବାସୀ ମାନଙ୍କର (ପ୍ରାୟ ୩୮୨ପ୍ରକାରର) ଗୋଷ୍ଠୀ ଜୀବନଙ୍କୁ ନଷ୍ଟ କରିବା ପଛରେ ରିଓଟିଣ୍ଟୋର ପୁଞ୍ଜିବିସ୍ତାର ଯୋଜନା ଦାୟୀ । ଦକ୍ଷିଣ ଆଫ୍ରିକାର ଦେ ବିୟର୍ସ ଯିଏ କି ହୀରା ଖୋଳିବା ନାମରେ ପୃଥିବୀର ବହୁ ନଦୀକୁ ନିଜ ଅକ୍ତିଆରକୁ ନେଇ ପାରିଛି ସେହି କମ୍ପାନୀ ଏବେ ନୂଆପଡ଼ା, ବଲାଙ୍ଗୀର ଜିଲ୍ଲାର ନଦୀ ପାଇଁ ଆଗ୍ରହୀ । ଏହା ସହିତ ଲ ଞ୍ଜିଗଡ଼ର ଷ୍ଟେରଲାଇଟ୍ କମ୍ପାନୀ ସହିତ ଆମେରିକାର ଆଲକ୍ୱା କମ୍ପାନୀର ଭିତିରିଆ ଚୁକ୍ତି ଲାଞ୍ଜିଗଡ଼ରୁ ଆଲୁମିନିୟମ ନେଇ (ଯାହାକି ବକ୍ସାଇଟ୍ ବାହାରିଥାଏ) ଆମେରିକାର ଯୁଦ୍ଧ ଅସ୍ତ୍ର ତିଆରି କରୁଥିବା କମ୍ପାନୀ ମାନଙ୍କୁ ପଠାଇବା ପାଇଁ ହୋଇଛି । ଆଜି ବିଶ୍ୱରେ ୪୦,୦୦୦ ବହୁରାଷ୍ଟ୍ରୀୟ କମ୍ପାନୀ ଅଛନ୍ତି ଯେଉଁମାନେ କି ନିଜରାଷ୍ଟ୍ର ବାହାରେ ମଧ୍ୟ ପୁଞ୍ଜି ନିବେଶ କରୁଛନ୍ତି ! ସେମାନେ କେତେ ସଂଖ୍ୟାରେ ଖଣି କ୍ଷେତ୍ରରେ କାମ କରୁଛନ୍ତ ତାହା କହିବ. କଠିନ ।

ପୁଞ୍ଜିର ବିକାଶ ପାଇଁ ପ୍ରାକୃତିକ ସମ୍ପଦର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସମିର ଅମିନ୍‌ଙ୍କ (Five monopolies theory) ଏ ଦିଗରେ ବେଶୀ ଠିକ୍ ଲାଗେ । ପୁଞ୍ଜିର ବିକାଶ ପାଇଁ ଯେଉଁ ପାଞ୍ଚଟି କ୍ଷେତ୍ରରେ ଏକ ଚାଟିଆ ଅଧିକାର ଆବଶ୍ୟକ ସେଥିମଧ୍ୟରୁ ପ୍ରାକୃତିକ ସମ୍ପଦ ଉପରେ ଅଧିକାର ପ୍ରମୁଖ (ଅନ୍ୟ ଚାରୋଟି ହେଲା: ଅର୍ଥ, ଯାନ୍ତ୍ରିକ କୌଶଳ, ଗଣମାଧ୍ୟମ ଓ ଗଣବିଧ୍ୱଂସୀ ଅସ୍ତ୍ରଶସ୍ତ୍ର) ଏବେ ଏହି ଭଳି ଏକ ଅର୍ଥନୀତିରେ ଆମେ ଶିକାର ହେବାରେ ଲାଗିଛୁ ଯେଉଁଠି ଆମର ପ୍ରାକୃତିକ ସମ୍ପଦକୁ ପୁଞ୍ଜିରେ ରୂପାନ୍ତରିତ କରି ନିଜସ୍ୱ ସମ୍ପତ୍ତି ବଢ଼ାଇବାର ଯୋଜନା ଚାଲିଛି । ଏଥିରେ ଓଡ଼ିଶା ଓ ଓଡ଼ିଶାର ପ୍ରାକୃତିକ ସମ୍ପଦ ଓ ଖଣିଜ ପଦାର୍ଥ ମଧ୍ୟ ବାଦ ଯାଇନାହିଁ । କେବଳ ଦାରିଦ୍ର୍ୟ ଦୂରୀକରଣ ଓ ବେକାରୀ ସମସ୍ୟାର ସମାଧାନ ଏକ ଧୂଆଁବାଣ । ପୁଞ୍ଜିବାଦୀ ଅର୍ଥନୀତିରେ ଗରିବ ଓ ବେକାରୀ ରହିବା ସ୍ୱଭାବିକ । ତାହା ଓଡ଼ିଶାରେ ଅଛି ତାହା ଆମେରିକାରେ ଅଛି । ବିକାଶପୂର୍ଣ୍ଣ ରାଷ୍ଟ୍ରର ଅର୍ଥନୀତି ବିକାଶଶୀଳ ରାଷ୍ଟ୍ରର ଅର୍ଥନୀତି ଉପରେ ନିର୍ଭର କରୁଥିବା ହେତୁ ମାତ୍ରାରେ ତାରତମ୍ୟ ରହିବା ସ୍ୱାଭାବିକ । ଯେମିତିକି ବକ୍ସାଇଟ୍ ବିଷୟ ଆଲୋଚନା କଲାବେଳେ ଦେଖାଯାଇଛି ଯେ ଯୁକ୍ତରାଷ୍ଟ୍ର ଆମେରିକାରେ ଆଲୁମିନିୟମର ବ୍ୟବହାର ମୁଣ୍ଡପିଛା ବର୍ଷକୁ ୫୯କେ.ଜି. ଥିବାବେଳେ (ଭାରତରେ ମୁଣ୍ଡପିଛା ବ୍ୟବହାର ୩୦୦ଗ୍ରାମ) । ସେ ଦେଶରେ ବକ୍ସାଇଟ୍ ଆଦୌ ଗଚ୍ଛିତ ନାହିଁ (ଭାରତର ସମଗ୍ର ପୃଥିବୀର ୧୩% ବକ୍ସାଇଟ୍ ରହିଛି) ଅଥଚ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆଲୁମିନିୟମର ଅତ୍ୟଧିକ ବଜାର ଚାହିଦାର ସୁଯୋଗ ନେଇ ଆଲକ୍ୱା କମ୍ପାନୀ (ଆମେରିକା) ଏବେ ୮୦ଟି ଦେଶରେ

ନିଜର ପୁଞ୍ଜି ନିବେଶ କରିସାରିଲାଣି, ଆମେରିକା ନିଜର ପେଟ୍ରୋଲିୟମ୍ ବ୍ୟବହାର ମାତ୍ର ୩୦% ନିଜ ଦେଶରୁ ପାଇଥିବା ବେଳେ ବାକି ୭୦% ପେଟ୍ରୋଲିୟମ ବିଭିନ୍ନ ତୈଳ ଦେଶଉପରେ ନିର୍ଭର କରିଥାଏ। ଏଥିପାଇଁ ଇରାକ୍ ଯୁଦ୍ଧ ଅନୁଷ୍ଠିତ କରାଗଲା । ଏବେ ସେହି ଆମେରିକାର ସେଲ୍, ଏକ୍ସନ କମ୍ପାନୀର ପ୍ରଭାବ ବଢ଼ିବାରେ ଲାଗିଛି ।

ଜନଆନ୍ଦୋଳନ ସବୁ ଓଡ଼ିଶାରେ ବିଭିନ୍ନ ବହୁରାଷ୍ଟ୍ରୀୟ କମ୍ପାନୀ ଓ ସରକାରୀ ଉଦ୍ୟୋଗକୁ ବିରୋଧ କରି ମୁଣ୍ଡ ଟେକୁଛି । ୧୯୮୬-୮୮ରେ ଗନ୍ଧମାର୍ଦ୍ଦନ ଅଞ୍ଚଳରେ ବାଲକୋ କମ୍ପାନୀକୁ ବିରୋଧ କରି ଏକ ଦୃଢ଼ ଜନଆନ୍ଦୋଳନ ସଂଗଠିତ ହୋଇପାରିଥିଲା। ଫଳରେ ୩୨କୋଟି ଟଙ୍କା ଖର୍ଚ୍ଚ କରିମଧ ବାଲକୋ ଧିରେ ଧିରେ ଅପସାରିତ ହୋଇଯାଇଥିଲା । ଏବେ ରାୟଗଡାର କାଶୀପୁର ଅଞ୍ଚଳରେ ଏକ ଦୃଢ଼ ଜନଆନ୍ଦୋଳନ ମୁଣ୍ଡ ଟେକିଛି । ଉତ୍କଳ ଆଲୁମିନି ଇଣ୍ଟରନ୍ୟାସନାଲ୍ ଲିମିଟେଡ ପରି ଏକ ଯୁଗ୍ମ ଉଦ୍ୟୋଗ କ୍ଷେତ୍ରରେ ଏବେ କାନାଡାର ଆଲକାନ କମ୍ପାନୀ (୪୫% ଅଂଶଧନ) ଓ ବିରଳାର ହିଣ୍ଡାଲକୋ (୫୫%) ମୁଖ୍ୟ ଅଂଶୀଦାର ଅଟନ୍ତି । ଏହା ପୂର୍ବରୁ ଟାଟା, ଆଲକ୍ସା, ନରୱେର ହାଇଡ୍ରୋ କମ୍ପାନୀ ଏହି ଯୁଗ୍ମ ଉଦ୍ୟୋଗରେ ଥିଲେ । ଜନଆନ୍ଦୋଳନ ଚାଲିବା ହେତୁ ଏହି ସବୁ କମ୍ପାନୀ ଧିରେ ଧିରେ ଓହରି ଗଲେ । ପରିସ୍ଥିତିକୁ ନିଜ ଅଧିନକୁ ନେବାପାଇଁ କମ୍ପାନୀ ପରାମର୍ଶରେ ପୋଲିସ୍ ଗୁଳିକାଣ୍ଡ ମଧ ହେଲା ଯେଉଁଥିରେ କି ତିନିଜଣ ଆଦିବାସୀ ଶହୀଦ ହୋଇଗଲେ । ହେଲେ ଏବେବି ସେ ଆନ୍ଦୋଳନ ଚାଲିଛି । ଏହା ସହିତ କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ଅଞ୍ଚଳରେ ମଧ ଷ୍ଟେରଲାଇଟ୍ କମ୍ପାନୀକୁ ବିରୋଧ କରି ଗଲା ବର୍ଷେ ହେଲା ଜନଆନ୍ଦୋଳନ ମୁଣ୍ଡ ଟେକୁଛି । ଏବେ ବି ଏହିସବୁ ଜନଆନ୍ଦୋଳନ ମାନଙ୍କୁ ଆବଶ୍ୟକୀୟ ସମର୍ଥନ ମିଳି ପାରୁନାହିଁ । ଏହାର କାରଣ ହେଲା ବିକାଶର ସ୍ୱପ୍ନ । ଏହି ବିକାଶର ପ୍ରଶ୍ନ ଏପରି ଭାବରେ ମଧବିତ୍ତ ଅଧ୍ୟାପକ, ସାମ୍ବାଦିକ, ଓକିଲ ଏପରିକି ଲେଖକ, କବି ମାନଙ୍କୁ ମଧ ଲାଗିଛି ଯେଉଁଥିପାଇଁକି ସେମାନେ ଏହିସବୁ ଜନଆନ୍ଦୋଳନକୁ ଖୋଲା ଖୋଲି ସମର୍ଥନ କରିବାକୁ କୁଣ୍ଠାବୋଧ କରୁଛନ୍ତି । ଏପରିକି କମ୍ୟୁନିଷ୍ଟ ରାଜନୈତିକ ଦଳମାନେ ଯଦିଓ ଘରୋଇକରଣ ଓ ଜଗତୀକରଣକୁ ବିରୋଧ କରୁଛନ୍ତି ମାତ୍ର ନିର୍ଦ୍ଦିଷ୍ଟ ପ୍ରକଳ୍ପ କ୍ଷେତ୍ରରେ ଅଲଗା ମତ ରଖୁଛନ୍ତି ।

ଏହି ସବୁ ଜନଆନ୍ଦୋଳନମାନେ ଯେ ବିକାଶ ବିରୋଧି ଏକଥା ସତ ମଧ ଓ ମିଥ୍ୟା ମଧ। ଆଜିର ପ୍ରଚଳିତ ଔଦ୍ୟୋଗିକ ବିକାଶ ବିରୁଦ୍ଧରେ ଏକ ସ୍ପଷ୍ଟ ଜନମତ ଏହି ସବୁ ଜନଆନ୍ଦୋଳନ ମଧରେ ଦେଖାଯାଏ । ତେଣୁ କାଶୀପୁର ବା ଲାଞ୍ଜିଗଡ଼ର ଆଦିବାସୀ



ଆମର ମଧ୍ୟବିତ୍ତ ବର୍ଗଠାରୁ ବରଂ ନିଜର ବିକାଶକୁ ନେଇ ବେଶି ସ୍ପଷ୍ଟ । କାରଣ ଔଦ୍ୟୋଗିକ ବିକାଶକୁ ବିରୋଧ କରିବା ସହିତ ଏହି ସବୁ ଜନଆନ୍ଦୋଳନ ମାନଙ୍କର ଏବେ ନିଜର ବିକାଶ ପ୍ରସଙ୍ଗ ବେଶ୍ ଭାବରେ ଆଲୋଚିତ ହେଉଛି । ଭୂମିହୀନଙ୍କୁ ଭୂମି, ଜମିକୁ ଜଳସେଚନ, ଜଙ୍ଗଲ ସୁରକ୍ଷା, ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି କଥା ଏଥିରେ ପ୍ରମୁଖ ଭାବରେ ଆସିବାରେ ଲାଗିଛି । ମାତ୍ର ନିଜର ସାଂଗଠନିକ ଶକ୍ତି ନେଇ ଏସବୁକୁ ନିଜସ୍ୱ ଉଦ୍ୟମରେ କରେଇବାରେ ପରମ୍ପରା ଏବେ ମଧ୍ୟ ଦେଖାଯାଇନାହିଁ ।

ତେବେ ଏହି ସବୁ ଜନଆନ୍ଦୋଳନମାନେ ମିଳିତ ଭାବରେ ଯେ ଏକ ଶକ୍ତି ଭବିଷ୍ୟତରେ ତିଆରି କରିପାରୁଛନ୍ତି ବା ଉଦ୍ୟମ ଜାରିରଖିଛନ୍ତି ତାହା ପ୍ରଶଂସନୀୟ । ମାଇକଣ୍ଠ ଶହୀଦ ଦିବସ ପାଳନରେ ସମସ୍ତ ଶକ୍ତି ଯୋଗଦାନ ଦେବା, ପରସ୍ପର କାର୍ଯ୍ୟକ୍ରମର ଅଂଶଗ୍ରହଣ କରିବାର ପରମ୍ପରାକୁ ଦେଖିଲେ ଜଣାପଡେ ଯେ ଏହି ଶକ୍ତି ଧିରେ ଧିରେ ବଢ଼ିବାରେ ଲାଗିଛି ।

ହେଲେ ଏହି ସବୁ ଜନଆନ୍ଦୋଳନ ମାନଙ୍କର ଏକ ରାଜନୈତିକ ଶକ୍ତି ଭାବରେ ଅଭ୍ୟୁଦୟ ହେବାର ବାକି ରହିଛି । ଯଦିଓ ନିଜର ଏକ ସ୍ପଷ୍ଟ ବିକାଶର କଥା ଏହି ସବୁ ଜନଆନ୍ଦୋଳନ ମାନଙ୍କର ଦେଖାଯାଉଛି, ବେଶୀ ସ୍ପଷ୍ଟ ହେଉଛି ଯଦି ଏହା ଆଦୀବାସୀ ନେତୃତ୍ୱ ମଧ୍ୟରେ ସୀମିତ ରହୁଛି । ତେବେ ଏକକ ଶକ୍ତିଭାବରେ ନିଜର କଥାକୁ କହିବା ବାକି ରହିଛି । ସେଥିପାଇଁ ଏହି ସବୁ ଶକ୍ତି ଏବେ ବି ଏକ ଏକ ପୋଖରୀ ହୋଇ ରହିଛି । ବିରାଟ ଶ୍ରମିକ ଆନ୍ଦୋଳନ ମଧ୍ୟରୁ ମାର୍କ୍ସବାଦ, କୃଷକ ଆନ୍ଦୋଳନ ମଧ୍ୟରୁ ସମାଜବାଦ, ଜମିଦାରୀ ବିରୋଧି ଜନଆନ୍ଦୋଳନ ମଧ୍ୟରୁ ନକ୍ସଲବାଦର ଜନ୍ମ । ଅର୍ଥାତ ଜନଆନ୍ଦୋଳନ ଯେତିକି ଯେତିକି ବ୍ୟାପକ ହୋଇଛି ସେହି ଅନୁସାରେ ଏହାର ଭବିଷ୍ୟତ ସମାଜ, ସେ ସମାଜର ସାମାଜିକ ସମ୍ବନ୍ଧ, ଅର୍ଥନୈତିକ ସମ୍ବନ୍ଧର କଥା କହିବା ସହିତ ନିଜର ଶତ୍ରୁକିଏ ଓ ନିଜର ମିତ୍ର କିଏ ସେକଥା ମଧ୍ୟ କହି ପାରିଛି । ଏହି ସବୁ ବିସ୍ଥାପନ ବିରୋଧି ଜନଆନ୍ଦୋଳନ ଯଦି ଗତିଶୀଳ ହୁଏ ତେବେ ନିଜ ଅସ୍ମିତାକୁ ନେଇ ନୂତନ ବିକାଶର କଥା ଏହା ନିଶ୍ଚୟ କହିବ ।

ଶେଷରେ, ଏହି ଲେଖା ମାଧ୍ୟମରେ ଏତିକି କହିବାକୁ ଚାହେଁ ଯେ ଆମର ସମୃଦ୍ଧ ବା ବିକାଶର ସ୍ୱପ୍ନ କେବଳ କେତେକ କମ୍ପାନୀଙ୍କୁ ଲାଭ ଯୋଗାଇବା ବ୍ୟତୀତ ଆଉ କିଛି କରୁନାହିଁ । ଅନ୍ୟପଟରେ, ସାଧାରଣ ଲୋକଙ୍କର ସ୍ଥିତି ଦିନକୁ ଦିନ ଆହୁରି ଖରାପ

ହୋଇଯାଉଛି । ନିଜ ପାଦତଳୁ ମାଟି ଚାଲିଗଲେ ଯେଉଁ ଅନିଶ୍ଚିତତା ମଧ୍ୟରେ ରହିବାକୁ ହୁଏ ଆଜି ସେହିପରି ଏକ ଅନିଶ୍ଚିତତା ଭିତରେ ଅଧାରୁ ଅଧିକ ଜନସମୁଦାୟ ଗତି କରୁଛନ୍ତି । ଏହା କେବଳ ଏକ ଭୁଲ ଅର୍ଥନୈତିକ ବ୍ୟବସ୍ଥା ହେତୁ ହେଉଛି ଏବଂ ଏହାର ମୂଳରେ ସେହି କମ୍ପାନୀ ମାନଙ୍କର ପୁଞ୍ଜି ବିସ୍ତାର ହିଁ ଦାୟୀ ।

ବହୁରାଷ୍ଟ୍ରୀୟ କମ୍ପାନୀମାନେ ସମସ୍ତ ସରକାରୀ କଳ, ପୋଲିସ ଓ ଆବଶ୍ୟକ ସ୍ଥଳେ ବିଚାର ବିଭାଗକୁ ମଧ୍ୟ ନିଜ ସ୍ୱାର୍ଥ ପାଇଁ ଲଗାଉଛନ୍ତି । ଜଳର ବ୍ୟବସାୟୀକରଣ, କୃଷିର ଔଦ୍ୟୋଗିକୀକରଣ, ଖଣିଜ ଦ୍ରବ୍ୟର କମ୍ପାନୀକୁ ଲିଜ୍ ଇତ୍ୟାଦି ଏହାର ଅଂଶ ବିଶେଷ । ସରକାର କମ୍ପାନୀକୁ ସୁହାଇଲା ଭଳି  ନୀତିନିୟମ ମାନ ସଂଶୋଧନ କରିବାରେ ବ୍ୟସ୍ତ । ଏହା ବିରୁଦ୍ଧରେ ପ୍ରତ୍ୟେକ ସ୍ତରରେ ଜନଆନ୍ଦୋଳନର ଆବଶ୍ୟକତା ରହିଛି । ପ୍ରକୃତରେ ଯେଉଁସ୍ଥାନରେ ଖଣିଜଦ୍ରବ୍ୟକୁ (ବକ୍ସାଇଟ୍ ହେଉ ବା ଲୁହାପଥର) କୌଣସି କମ୍ପାନୀକୁ ଦିଆଯାଉଛି, ପାଣିକୁ ଯେଉଁ ଯାଗାରେ କମ୍ପାନୀଙ୍କୁ ଲିଜ୍ ଆକାରରେ ଦିଆଯାଉଛି ବା ଯେଉଁଠି କୃଷି ଜମିକୁ ଶିଳ୍ପ ପାଇଁ ବ୍ୟବହାର କରାଯାଉଛି ସେହି ସବୁ ସ୍ଥାନରେ ଜନଆନ୍ଦୋଳନ ମାନ ଗଢ଼ିଉଠିବା ଆଜିର ପରିସ୍ଥିତିରେ ଆବଶ୍ୟକ । ସେଥିପାଇଁ ସାମଗ୍ରିକ ଜନଚେତନାର ଆବଶ୍ୟକ ରହିଛି । ମଧ୍ୟବିତ୍ତ ବର୍ଗର ଦ୍ୱନ୍ଦ୍ୱ ହିଁ ପ୍ରକୃତରେ ଏହି ଜନଚେତନା ବଢ଼ିବାରେ ପ୍ରଥମ ପ୍ରତିବନ୍ଧକ । ସେଥିରୁ ମୁକୁଳିବା ଦରକାର ।

ଏହି ବିଶ୍ୱୀକରଣ ବିରୁଦ୍ଧରେ ଯେ ସଂଗ୍ରାମ ନ ଚାଲିଛି ତାହା ନୁହେଁ । କାଶୀପୁର, ଲାଞ୍ଜିଗଡ଼ ଆନ୍ଦୋଳନ ଏହାର ଅନ୍ତର୍ଭୁକ୍ତ । ଲୁଣକୁ କମ୍ପାନୀଠାରୁ ମୁକ୍ତ କରିବା, ପାଣିକୁ ମୁକ୍ତ ରଖିବା ପାଇଁ ମଧ୍ୟ ଏ ରାଜ୍ୟରେ ଆନ୍ଦୋଳନ ଚାଲିଛି । ଏହି ସବୁ ଜନଆନ୍ଦୋଳନ କିପରି ମୁଖ୍ୟ ରାଜନୈତିକ ଦଳ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରଭାବରୁ ମୁକ୍ତ ରହିବ ସେ ଦିଗରେ ଧ୍ୟାନ ଦିଆଯିବା ଆବଶ୍ୟକ । ତେବେଯାଇ ଏହିସବୁ ଛୋଟ ଛୋଟ ଜନଆନ୍ଦୋଳନର ସମନ୍ୱୟରେ ଏକ ବିରାଟ ଆନ୍ଦୋଳନର ପରିକଳ୍ପନା ମଧ୍ୟ କରାଯାଇପାରେ ।





# ଷ୍ଟେରେଲାଇଟ୍ କମ୍ପାନୀ ବିରୁଦ୍ଧରେ ଜନ ଆନ୍ଦୋଳନ

*ପ୍ରେମଲାଲ ପଦ୍ମଶ୍ରୀ*

କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ ବ୍ଲକକୁ ଆସିଥିବା ଷ୍ଟେରେଲାଇଟ୍ କମ୍ପାନି ଆମର ସ୍ଥାନୀୟ ଆଦିବାସୀମାନଙ୍କୁ ବହୁତ ଆଶା ଦେଖାଇ ମିଥ୍ୟା ପ୍ରଚାର କରୁଛି । କେତେକ ଲୋକ ସେହି ମିଥ୍ୟା କଥାକୁ ହୃଦୟ ଭିତରେ ଧରିନେଇଛନ୍ତି ଓ କମ୍ପାନୀର ଦଲାଲ ସାଜିଛନ୍ତି । କଳାହାଣ୍ଡି ଗୋଟିଏ ଗରିବ ଜିଲ୍ଲା । ଏହି ଜିଲ୍ଲାରେ ବହୁ ଲୋକ ଦରିଦ୍ର ସୀମାରେଖା ତଳେ ଅଛନ୍ତି । କଳାହାଣ୍ଡି ଗୋଟିଏ ମରୁଡି ଅଞ୍ଚଳ ଓ ଅନାହାର ମୃତ୍ୟୁର ଅଞ୍ଚଳ ମଧ୍ୟ । ଲାଞ୍ଜିଗଡ଼ଠାରେ ଷ୍ଟେରେଲାଇଟ୍ କମ୍ପାନୀ ରିଫାଇନାରି ଫ୍ୟାକ୍ଟ୍ରି ବସାଇବ । ସେହି ରିଫାଇନାରୀ ଫ୍ୟାକ୍ଟ୍ରି କରିବାପାଇଁ ଦୁଇଟି ପଞ୍ଚାୟତ ଯଥା (ଲାଞ୍ଜିଗଡ ପଞ୍ଚାୟତ ଓ ବାତେଲିମା ପଞ୍ଚାୟତ)ର ୧୨ଖଣ୍ଡ ଗାଁ ବିସ୍ଥାପିତ ହେଉଛି । ଲାଞ୍ଜିଗଡ ପଞ୍ଚାୟତର ସିନ୍ଦିବାହଲ, ବସନ୍ତପଡା, କୋଠଦ୍ୱାର, ବନ୍ଦଗୁଡା, ବୁନ୍ଦେଲ, ବରଭଟା, । ବାତେଲିମା ପଞ୍ଚାୟତର ଟୁରୀଗୁଡା, ବୁରିଙ୍ଗପଦର, ବେଲମ୍ବା, କପାଗୁଡା, କିନାରୀ ଓ ଜଗନ୍ନାଥପୁର । ଏହି ସବୁ ଗ୍ରାମର ୩୦୨ ପରିବାର ଲୋକ ବିସ୍ଥାପିତ ହୋଇ ନିଜର ଜମି ହରାଇବେ । କଳାହାଣ୍ଡି କଲେକ୍ଟର ଓ କମ୍ପାନୀର ଲୋକ ସେହି ଗାଁ ମାନଙ୍କୁ ଯାଇ ଲୋକମାନଙ୍କୁ ବୁଝାମଣା କରୁଛନ୍ତି ଏବଂ କହୁଛନ୍ତି ତୁମେ ଜମି ଛାଡି ଦିଅ ସେଠୀ କମ୍ପାନୀ ହେବ । କମ୍ପାନୀକୁ ଜମିଛାଡିଦେଲେ ତୁମ୍ଭମାନଙ୍କୁ କମ୍ପାନୀ ଚାକିରୀ ଦେବ ଓ ଏକର ପିଛା ଜମିକୁ ଏକ ଲକ୍ଷଟଙ୍କା ଦିଆଯିବ । ଟଙ୍କା ପାଇଲା ମାତ୍ରେ ଧନୀ ହୋଇ ଯିବ ଓ ଗାଡି ମଟର ଚଢ଼ିବ ବୋଲି ମିଥ୍ୟା ପ୍ରତିଶ୍ରୃତି ଦେଉଛନ୍ତି । ଯେଉଁ ମାନଙ୍କର ଘରଦ୍ୱାର ଯାଉଛି, ସେହିମାନଙ୍କୁ କମ୍ପାନୀ ଓ କଲେକ୍ଟର କହୁଛନ୍ତି ତୁମ ମାନଙ୍କୁ ପକ୍କାଘର ଦିଆଯିବ, ପଙ୍ଖା ଲାଗିଥିବ, ଲାଇନ ବା ଇଲେକଟ୍ରିକ୍ ଲାଗିଥିବ ଓ ପାଇଖାନା ଥିବା ଘର ଦିଆଯିବ । ଆପଣମାନେ ସୁଖରେ ରହିବେ ବୋଲି ପ୍ରଚାର କରିବୁଲୁଛନ୍ତି । କମ୍ପାନୀର ଦଲାଲମାନେ ଏହି ବାରଖଣ୍ଡ ଗାଁର ଲୋକମାନଙ୍କୁ କହିଲେ କୋରାପୁଟ ଜିଲ୍ଲାର ଦାମନଯୋଡି ଏକ ଆଲୁମିନା ବିଶୋଧନାଗାର ହୋଇଛି । ଏଥିରେ ବିସ୍ଥାପିତ ହୋଇଥିବା ଲୋକମାନେ ବହୁତ ସୁଖରେ ଅଛନ୍ତି ବୋଲି କହି ସମସ୍ତ ଗାଁମାନଙ୍କର ଲୋକମାନଙ୍କୁ କମ୍ପାନୀ ନିଜର ଗାଡ଼ିରେ ଦେଖାଇନେଇଥିଲା । ଇଞ୍ଜିନିୟର ଓ ଅଫିସର ମାନଙ୍କ ଘରକୁ ଦେଖାଇ ଦେଇଥିଲା । ଫଳରେ ଆଦିବାସୀମାନେ ବିଶ୍ୱାସ କଲେ ନାହିଁ । କାହିଁକି ବିଶ୍ୱାସ କଲେନାହିଁ । କେତେଜଣ ବ୍ୟକ୍ତି ତାଙ୍କର ସାଥିରେ

ନ' ବୁଲି ନିଜେ ବୁଲିବାକୁ ଯାଇ ବିସ୍ଥାପିତ ଲୋକମାନଙ୍କୁ ଯେଉଁ କଲୋନୀ ଦେଇଛି କମ୍ପାନୀ ସେହି କଲୋନୀକୁ ଯାଇ ଲୋକଙ୍କର ସହିତ କଥା ବାର୍ତ୍ତା ହୋଇଥିଲେ । ଦାମନଯୋଡ଼ିର ବିସ୍ଥାପିତ କଲୋନୀର ଲୋକମାନେ କହିଲେ ଭାଇମାନେ ଆମର ଅବସ୍ଥା ଦେଖୁଛ, ଆମେ କିପରି ଅବସ୍ଥାରେ ଅଛୁ । ଆପଣମାନେ ଚିନ୍ତା କରନ୍ତୁ, ଆପଣମାନେ ମଧ୍ୟ ଆମରି ଅବସ୍ଥାରେ ରହିବେ ବୋଲି କହିବାରୁ ସେମାନେ ଫେରିଆସି ଗ୍ରାମମାନଙ୍କରେ ଆଲୋଚନା ଆରମ୍ଭ କଲେ । କମ୍ପାନୀ କହୁଥିବା କଥା କେତେଦୂର ସତ ତାର ପ୍ରମାଣ ପାଇଗଲେ ଓ ଆନ୍ଦୋଳନ କରିବାକୁ ପ୍ରତିଜ୍ଞା ବଦ୍ଧହେଲେ । ନିଜେ ଆଦିବାସୀମାନେ ଗାଁ ମାନଙ୍କୁ ଯାଇ ବୁଝେଇବାକୁ ଲାଗିଲେ । ଭାଇମାନେ କମ୍ପାନୀ ଆମ୍ଭମାନଙ୍କୁ ଚାକିରି ଦେବନାହିଁ । ୨୫୦ଜଣଙ୍କୁ ଚାକରିଦେବ । କପାଗୁଡା ଗାଁର ବୁଟିମାଝୀ, ବେଲମ୍ବାର ଦଇସିଂ ମାଝୀ, ବୁରିଙ୍ଗପଦର ଗାଁର ପୂର୍ଣ୍ଣମାଝୀ, ଝୁରାଗୁଡା ଗ୍ରାମର ଆଡସି ମାଝୀ ଚାରିଜଣ ଦାମନଯୋଡ଼ି ଯାଇଥିଲେ ଓ ଷ୍ଟେରେଲାଇଟ କମ୍ପାନୀର ମିଥ୍ୟା ପ୍ରଚାରକୁ ଲୋକମାନଙ୍କ ପାଖରେ ଉପସ୍ଥାପନା କରିବୁଲିଲେ । ଯେଉଁ ୨୫୦ଜଣ ଚାକିରୀ ପାଇବେ, କମ୍ପାନୀ କହୁଛି ଯୋଗ୍ୟତା ଅନୁଯାଇ ଚାକିରୀ ଦିଆଯିବ । ଯେଉଁ ବ୍ୟକ୍ତି ଇଞ୍ଜିନିୟରିଙ୍ଗ କରିଥିବ, କମ୍ପୁଟରେ କରିଥିବ ବା ଆଇ.ଟି.ଆଇ. କରିଥିବ ସେହିବ୍ୟକ୍ତି ମାନଙ୍କୁ ଚାକିରୀଦେବ । ସେହି ଅଞ୍ଚଳରେ ଆଦିବାସୀମାନେ କହୁଛନ୍ତି ଆମ ଅଞ୍ଚଳରେ ତ ସ୍କୁଲ ନାହିଁ, ଆମେତ ପାଠପଢ଼ି ନାହୁଁ, ଆମେ ଚାକିରୀ ପାଇବୁକି ? ଆମକୁତ କମ୍ପାନୀ ଚାକିରୀ ଦେବ ନାହିଁ । କମ୍ପାନୀର ଚାକିରୀଆ ମାନଙ୍କର ହଳିଆ ରହିବୁ । କମ୍ପାନୀର ଚାକିରୀଆମାନେ ତାଙ୍କର ପିଲାଛୁଆ ଧରିବା ପାଇଁ, ପାଇଖାନା ସଫାକରିବା ପାଇଁ, ସେମାନଙ୍କର କପଡା ଓ ଖାଇଲା ବାସନ କୁସନ ସଫା କରିବା ପାଇଁ ଆମ୍ଭମାନଙ୍କୁ ମଜୁରୀ ହିସାବରେ ରଖିବେ । ଆମେତ ଆଦିବାସୀଲୋକ କେବେବି କୁଲି ମଜୁରୀ କରିଖାଇ ନାହୁଁ । ଆମେ ମାଣ୍ଡିଆ ଜାଉ ଖାଇବାର ଲୋକ । ଜଙ୍ଗଲରୁ ଓଲ, କନ୍ଦା, କରଡି, ଶାଗ ଇତ୍ୟାଦି ବିନା ପଇସାରେ ଆଣି ଖାଉଛୁ ଏବଂ ଶାନ୍ତିରେ ରହୁଛୁ । ସେହି କମ୍ପାନୀର ଚାକିରୀଆ ମାନଙ୍କର ପାଇଖାନା, ବାସନ ସଫା କରିବୁ, ପିଲାଖେଳେଇବୁ କାହିଁକି ? ଆମେ ଭୋକରେ ହଉ କି ଶୋଷରେ ହେଉ କେତେ ଶାନ୍ତିରେ ଅଛୁ । ସେମାନଙ୍କର ପାଖକୁ ଯାଇ ଗାଳି ଶୁଣି ଶୁଣି ଖଟିବୁ । ଟିକିଏ ଭୁଲ ହୋଇଗଲେ ଆମକୁ ବାହାର କରିଦେବ । ସେଥିପାଇଁ ଆମେ ଜମିଛାଡିବୁ ନାହିଁ ଓ ଜଙ୍ଗଲ ଛାଡିବୁ ନାହିଁ । ଭାଇମାନେ କମ୍ପାନୀ କହୁଛି ଜମି ଛାଡିଦେଲେ ଟଙ୍କା ମିଳିବ । ଟଙ୍କା କେତେ ଦିନ ରହିବ । ଏହି ଜମି ଆମେ ତିଆରି କରି ନାହୁଁ । ଆମର ପୂର୍ବ ପୁରୁଷମାନେ ତିଆରି କରିଛନ୍ତି ଏବଂ ସେମାନେ ଏହି ଜମିରେ ଚାଷକରି (ମାଣ୍ଡିଆ, କାଙ୍ଗ, କୁମଲା, କୋଦୋ, ଗୁରୁଜି, କାନ୍ଦୁଲ,

ଝୁଡୁଙ୍ଗ) ଚାଷକରି ଚଳୁଥିଲେ ଓ ନିୟମଗିରି ଜଙ୍ଗଲରୁ କନ୍ଦା, ଫଳ ମୂଳ ଏବଂ ଝରଣା ପାଣି ପିଇ ବଞ୍ଚୁଥିଲେ । ସେହି ପୂର୍ବ ପୁରୁଷ ଆଜି ଦେଇଥିବା ସମ୍ପତ୍ତିକୁ ଗୋଟିଏ ରାକ୍ଷାସ ହାତରେ ଟେକିଦେବା ନାହିଁ । ଆମ୍ଭେମାନେ ମଧ୍ୟ ସେମାନଙ୍କ ଭଳି ବଞ୍ଚିବା ଏବଂ ଆମର ପୁଅ, ନାତି ନାତୁଣି ମଧ୍ୟ ବଞ୍ଚିବେ । ଆମେ ଶୁଣିବାକୁ ପାଉଛୁ ଷ୍ଟେରେଲାଇଟ୍ କମ୍ପାନୀ ୨୩ବର୍ଷ ନିୟମଗିରି ଜଙ୍ଗଲକୁ ସରକାର ପାଖରୁ ଲିଜ୍ ନେଇଛି । ସେ ୨୩ବର୍ଷ ମଧ୍ୟରେ ନିୟମଗିରି ଜଙ୍ଗଲରୁ ବକସାଇଟ ଖନନ କରି ନିୟମଗିରି ଜଙ୍ଗଲକୁ ମାଟିରେ ମିଶାଇଦେଇ ଚାଲିଯିବ । ହେଲେ ଭାଇମାନେ ଆମ ଶରୀର ଭିତରେ କଲିଜା ବା ଫୁସଫୁସ୍ ଥିବା ଦ୍ୱାରା ଅମେ ବଞ୍ଚିପାରିବୁ । ସେହିଭଳି ନିୟମଗିରି ପାହାଡ଼ରେ ବକ୍ସାଇଟ୍ ରହିଅଛି । ମନୁଷ୍ୟ ଶରିରରୁ ଯଦି ଫୁସଫୁସ୍ କାଢ଼ି ନିଆଯାଏ ତାହେଲେ ମନୁଷ୍ୟ ବଞ୍ଚି ପାରିବ ନାହିଁ । ତେଣୁ ନିୟମଗିରି ପାହାଡରୁ ବକ୍ସାଇଟ୍ କାଢ଼ିନେଲେ ନିୟମଗିରି ବଞ୍ଚି ପାରିବନାହିଁ । ନିୟମଗିରି ପାହାଡ ହେଉଛି ଆମର ମାଁ, ଆମର ଜନ୍ମ ଦାତ୍ରୀ । ଯଦି କିଏ ଜଣେ ବଳତକାର କରେ ଧର୍ଷଣ କରିବାକୁ ଆସିବ ତାହେଲେ ଆମେ ଦେଖିପାରିବା କି ? ତାକୁ ମାଡମାରି ହତ୍ୟା କରିଦେବା । ଷ୍ଟେରେଲାଇଟ୍ କମ୍ପାନୀ ହେଉଛି ଗୋଟିଏ ରାକ୍ଷାସ । ଏହି ରାକ୍ଷାସ ନିୟମଗିରି ମାଁକୁ ଧର୍ଷଣ ବା ଅତ୍ୟାଚାର କରିବା ପାଇଁ ଧାଇଁ ଆସିଛି । ଏହି ନିୟମଗିରି ଜଙ୍ଗଲଥିବା ଦ୍ୱାରା ଶହ ଶହ ହଜାର ହଜାର ଲୋକ ବଞ୍ଚୁଛନ୍ତି । ଏହି ନିୟମଗିରି କୋଳରୁ ଜାତ "ବଂଶଧାରା ଓ ନାଗାବଳୀ" ଚିର ସ୍ରୋତା ଦୁଇଟି ନଦୀ ବହୁଛି ଏବଂ କେତେ ଫଳ ମୂଳ ଦେଉଛି । ମରୁଡି ହେଲେ ମଧ ମରୁଡି ଭଳି ଜଣାପଡୁନାହିଁ । ଏହି ନିୟମଗିରି ମାଁକୁ ମୃତ୍ୟୁ ମୁଖରୁ ଉଧାର କରିବାକୁ ହେବ। ଆମେ ଆଦିବାସୀ ଲୋକ ଟଙ୍କା ନେଇ କଣ କରିବୁ । ଆମର ଟଙ୍କା ହେଉଛି ଏହି ଜଙ୍ଗଲର ଗଛ ଓ ପତ୍ର । ଆମେ ଟଙ୍କା ପାଇଲେ ମଦପିଇ ଖର୍ଚ୍ଚ କରିଦେବୁ । ସେଥିପାଇଁ ଆମକୁ ଟଙ୍କା ଦରକାର ନାହିଁ । କୋଠାଘର ଦରକାର ନାହିଁ । ଆମକୁ ବିଜୁଳୀବତୀ ଦରକାର ନାହିଁ । ଦରକାର ନାହିଁ ପଙ୍ଖା ।

ଏହି ଉକ୍ତିରେ ଟୁରୀଗୁଡ଼ା ଗ୍ରାମର ଆଡସୀ ମାଝୀ କହନ୍ତି, ଭାଇମାନେ ଆମକୁ ଭଗବାନ ପ୍ରକୃତିର ପଙ୍ଖା ଦେଇଛନ୍ତି । ଯେଉଁ ପଙ୍ଖା କେବେ ମଧ ଖରାପ ହେବନାହିଁ। କମ୍ପାନୀ ଯେଉଁ ପଙ୍ଖା ଦେବ ତାହା ଅଳ୍ପ ଦିନରେ ଖରାପହୋଇଯିବ । ଆମେ ଜଙ୍ଗଲରୁ ବା କାମ, ଧାମ କରି ଆସି ମାଣ୍ଡିଆ ଯାଉ ଖାଇ ଗଛ ତଳରେ ବସିଲେ ବହୁତ ଆରାମ ଲାଗିଥାଏ। ଦେହରୁ ବହୁଥିବା ଝାଳ ସୁଲୁସୁଲିଆ ଥଣ୍ଡା ପବନରେ ଗଛ ତଳରେ ବସିଲେ ସୁଖିଯାଇଥାଏ ଓ ତାଏଁ କିନା ନିଦ ବାଡିବସେ । ଷ୍ଟେରେଲାଇଟ୍ ଦେବା ପଙ୍ଖା ସେହି ଫଳ ଆଣିଦେବକି ? ତେଣୁ ମୁଁ ଷ୍ଟେରେଲାଇଟ୍ କମ୍ପାନୀକୁ ବିରୋଧ କରୁଛି । ଭାଇମାନେ ଆମେ ଯେମିତି

ହେଲେ ଶେଷ ଜୀବନ କଟାଇବୁ । ଆମର ପିଲା ଛୁଆମାନଙ୍କର ଭବିଷ୍ୟତ କଣ ହେବ । ସେମାନେ କିପରି ଭାବରେ ଚଳିବେ । ଷ୍ଟେରେଲାଇଟ୍ କମ୍ପାନୀ କହୁଛି ବା ତାର ପ୍ରୋଜେକ୍ଟ ରିପୋର୍ଟ କହୁଛି, ଏହି ଅଞ୍ଚଳରେ ଦୁଇଟି ପୋଖରୀ ତିଆରି କରିବ । ଗୋଟିଏ ହେଲା "ପାଉଁଶ ପୋଖରୀ" ଓ ଆଉଗୋଟିଏ ହେଲା "ନାଲିମାଟିର ପୋଖରୀ" । କେତେକ ଜାଣିରଖିବା ଲୋକ କହୁଛନ୍ତି, ଏକ କିଲୋଗ୍ରାମ ବକ୍ସାଇଟ୍‌କୁ ତାର ବିଶୋଧନାଗାରରେ ପକାଇ ଆଲୁମିନା ବାହାରକରିବାକୁ ହେଲେ ୨୫୦ଗ୍ରାମ ଆଲୁମିନା ବାହାରିବ ଓ ୭୫୦ଗ୍ରାମ ନାଲିମାଟି ବାହାରିବ । ଅଧା ପାଉଁଶ ପୋଖରୀରେ ରହିବ ଓ ଅଧା ନାଲିମାଟି ପୋଖରୀରେ ରହିବ । ଯେତେବେଳେ ତାର ଖଣି ଖନନ ସରିଯିବ କମ୍ପାନୀ ତାର ଖଣି ଖନନ ସରିଗଲେ ଏହି ଦୁଇଟି ଖରାପ ଜିନିଷ ଛାଡିଦେଇଯିବ । ପାଉଁଶ ପୋଖରୀର ଜଳ ହେଉଛି ବିଷାକ୍ତ ଜଳ । ଏହି ଜଳ ଯେଉଁ ବାଟ ଦେଇଯିବ ସେହି ଅଞ୍ଚଳର ଲୋକ ବିସ୍ଥାପିତ ନ ହୋଇଥିଲେ ସୁଧା ବିସ୍ଥାପିତ ହେବାକୁ ବାଧ୍ୟ ହେବେ ।

ରେଡ୍‌ମଡ୍ ଓ ଆସ୍‌ପଣ୍ଡ ଭଳି ବିଷାକ୍ତ ଜଳ ବଂଶଧାରା ନଦୀରେ ଛାଡିବେ । ସେହି ବଂଶଧାରା ନଦୀର ପାଣି ଯେଉଁମାନେ ବ୍ୟବହାର କରିବେ ସେହିମାନେ ରୋଗଗ୍ରସ୍ତ ହେବେ । ପଶୁ, ପକ୍ଷୀବି ବ୍ୟବହାର କରିପାରିବେ ନାହିଁ । ଆହୁରି ଆଦିବାସୀମାନେ ଏକସ୍ୱରରେ କହୁଛନ୍ତି, ଆଦିବାସୀମାନଙ୍କର ଜମି ଅଣଆଦିବାସୀମାନେ ନେଇପାରିବେ ନାହିଁ । କମ୍ପାନୀତ ଆଦିବାସୀ ଲୋକ ନୁହେଁ, ସେ ହେଉଛି ଅଣ ଆଦିବାସୀ ବା ବହୁରାଷ୍ଟ୍ରୀୟ କମ୍ପାନୀ । ସେହି କମ୍ପାନୀ ଆମ ଆଦିବାସୀଙ୍କର ଜମିକୁ ନେଇପାରିବ । ଏହି ନିୟମ ସରକାର କିପରି ଭାବରେ ଲାଗୁକରିଛନ୍ତି ? ଆମର ଅଧିକାରରୁ ସରକାର କାହିଁକି ଆମ୍ଭମାନଙ୍କୁ ବଞ୍ଚିତ କରୁଛନ୍ତି ? ଜଳ, ଜମି ଓ ଜଙ୍ଗଲ ଆମର ଅଧିକାର । ଆମକୁ ଏହି ଅଧିକାରକୁ ଛଡେଇ ଆଣିବାକୁ ପଡିବ । ଆମେ ସମସ୍ତେ ଆଦିବାସୀ ଏକସ୍ୱରରେ ଡାକରା ଦେଇ କହୁଛୁ "ଜଳ, ଜମି ଓ ଜଙ୍ଗଲ ଆମରଟା ନାଇସେ କାର ବାପରଟା" । ଏହି ଡାକରାରେ ସବୁ ଆଦିବାସୀଙ୍କ ଶରୀରରେ ରକ୍ତର ସଞ୍ଚାର ହୋଇଗଲା ଓ ଆଦିବାସୀ ରକ୍ତ ପ୍ରବାହିତ ହେଲା ଓ ସମସ୍ତେ ଏକ କଥା କହିବାକୁ ଲାଗିଲେ ଆମେ ଆଦିବାସୀ ଆମ ଜମି ଓ ଜଙ୍ଗଲକୁ କାହା ହାତରେ ଟେକିଦେବା ନାହିଁ । ବରଂ ଲଢେଇ କରି ମାଁ ମାଟିକୁ ରକ୍ଷା କରିବା । ମରିବା ପଛେ ଡରିବା ନାହିଁ, ଜନମମାଟିକୁ ଛାଡିବା ନାହିଁ । ଏହି ଡାକରା ଦେଇ ଏକ କମିଟି ଗଠନ କଲେ ଓ ନାମ ରଖିଲେ "ନିୟମଗିରି ସୁରକ୍ଷା ସମିତି" ।

ଏହି ଆନ୍ଦୋଳନକୁ ବହୁତ ଜନ ଆନ୍ଦୋଳନ ଓ ଖଣି ଆନ୍ଦୋଳନର ଲୋକମାନେ ସାହାଯ୍ୟ କରିବାପାଇଁ ଆସୁଛନ୍ତି । ଗତ ମାର୍ଚ୍ଚ ୩୧ ତାରିଖ ଦିନ ସମାଜବାଦୀ

ଜନପରିଷଦର ରାଜ୍ୟ ସଭାପତି ତଥା ଓଡ଼ିଶାର ବିଭିନ୍ନ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରୁଥିବା ସାଥି ଲିଙ୍ଗରାଜ ଆଜାଦ୍ ଆମର ଆନ୍ଦୋଳନକୁ ସାହାଯ୍ୟ କରିବାକୁ ଆସିଥିଲେ। ସେ ନିୟମଗିରି ସୁରକ୍ଷା ସମିତି ସାଥୀମାନଙ୍କ ସହିତ ଆଲୋଚନା କରି ଏପ୍ରିଲ ୧ ତାରିଖ ଦିନ ଦଶଟା ସମୟରେ ଘରକୁ ଯିବାକୁ ଲାଞ୍ଜିଗଡ ବସ ଚଢ଼ିବା ପାଇଁ ଯାଇଥିଲେ। ଶ୍ରୀ ଆଜାଦ୍‌ଙ୍କୁ ଦେଖି କମ୍ପାନୀର ଦଲାଲମାନେ ତାଙ୍କୁ ଧରିନେଇ ପୁଲିସକୁ ଦେଇଦେଇଥିଲେ। ଏହି ଖବର ସଂଧ୍ୟା ୪ଟା ସମୟରେ ପାଇଲୁ ଓ ନିୟମଗିରି ସୁରକ୍ଷା ସମିତି ଗୋଟିଏ ଜରୁରୀ କାଳୀନ ମିଟିଙ୍ଗ ଡାକିଲା ଓ ନିଷ୍ପତ୍ତି ନେଲା ସମସ୍ତେ ଆଦିବାସୀ ଯାଇ ଲାଞ୍ଜିଗଡ ଥାନା ଘେରାଉ କରିବୁ ଓ ଲିଙ୍ଗରାଜ ଆଜାଦ୍‌ଙ୍କୁ ଥାନା ଭିତରୁ ବାହାର କରି ଆଣିବୁ।

୨ ତାରିଖ ଦିନ ସକାଳ ୮ଟା ସମୟରେ ଆମ ଅଞ୍ଚଳର ଗ୍ରାମ (ଟୁରାଗୁଡା, ବୋରିଙ୍ଗପଦର, କପାଗୁଡା, ବେଲମା ଓ ବସନ୍ତପଡା)ର ୨୫୦ ରୁ ୩୦୦ ଆଦିବାସୀ ସ୍ତ୍ରୀ ପୁରୁଷ ଓ ଅଣ ଆଦିବାସୀ ସ୍ତ୍ରୀ ପୁରୁଷ ଥାନା ଘେରାଉ କରିବା ପାଇଁ ଯାଉଥିଲେ। ସେହି ସମୟରେ ଲାଞ୍ଜିଗଡ କ୍ରିକେଟ ଟିମ୍ ନାମରେ କମ୍ପାନୀର ଯେଉଁ ଗୁଣ୍ଡା ଦଳ ଅଛନ୍ତି ସେମାନଙ୍କୁ କହିଦିଆଯାଇଥିଲା। ସେମାନଙ୍କୁ ୨୦,୦୦୦ ଟଙ୍କା ଓ ମଦ ଦିଆହୋଇ ଥିଲା। ସେମାନଙ୍କୁ କୁହାଯାଇଥିଲା ତୁମେମାନେ ମଦପିଇ ଷ୍ଟମ୍ପ ଓ ବ୍ୟାଟଧରି କ୍ରିକେଟ ପଡିଆରେ ରେଡି ଥାଅ। ଥାନା ପାଖକୁ ପହଞ୍ଚିବା ପାଇଁ ୧୦୦ ମିଟର ଖଣ୍ଡିଏ ଥାଏ, ସ୍ତ୍ରୀମାନେ ଆଗରେ ଥିଲେ ଓ ପୁରୁଷମାନେ ପଛରେ ଥିଲେ। ଗୁଣ୍ଡାମାନେ ସ୍ତ୍ରୀ ଲୋକମାନଙ୍କ ପାଖକୁ ଚାଲିଆସି କାହିଁକି ଆସୁଛ ବୋଲି କହି ନିର୍ମମ ଭାବରେ ମାଡ ମାରି ବସନ୍ତପଡାକୁ ପହଞ୍ଚାଇ ଦେଇଥିଲେ। ଗୁଣ୍ଡାମାନେ ପୁରୁଷ ଲୋକମାନଙ୍କୁ ଦୌଡେଇ ଦୌଡେଇ ମାଡମାରୁଥାନ୍ତି ରାସ୍ତାରେ ଦୁଇଟି କମାଣ୍ଡରରେ ମଦ ଲାଠିର ସହାଯ୍ୟ ଦିଆଯାଉଥାଏ। ଏହି ଭଳି ଭାବରେ ଗୁଣ୍ଡାମାନେ ମଦପିଇ ଉଗ୍ରଭାବ ଆକାରରେ ମାଡମାରି ଗାଁମାନଙ୍କୁ ପହଞ୍ଚାଇଦେଇଥିଲେ ଏବଂ ଟୁରାଗୁଡା ଗାଁର ଭୀମ ମାଝୀର ସାଇକେଲ ମଧ୍ୟ ଭାଙ୍ଗିଦେଇଥିଲେ। ୧୫ଜଣ ଲୋକଙ୍କୁ ଅଧିକ ମାଡ ମାରି ଥିଲେ ଓ କାହାର ହାତ ଭାଙ୍ଗିଦେଇଥିଲେ ତ କାହାର ମୁଣ୍ଡ ଫାଟି ଯାଇଥିଲା ତ କାହାର ଆଖି ଫାଟି ଯାଇଥିଲା। ଏଭଳି ଭାବରେ ମାଡ ମାରିଥିଲେ। ଏହି ଘଟଣା ସହିତ ସରକାର ଏବଂ ପୁଲିସ ମଧ୍ୟ ଜଡିତ। ପ୍ରଶାସନ ମଧ୍ୟ ଜାଣି କାହିଁକି ନିରବ ରହୁଛି ତାହା ଏକ ପ୍ରଶ୍ନବାଚୀ। ପୁଲିସ ଓ ପ୍ରଶାସନତ କମ୍ପାନୀର ଲୋକ, ସେମାନେ ଆମର ଅସହ୍ୟ ଦୁର୍ଦ୍ଦଶା ବୁଝିଲେ ନାହିଁ। ଆମେମାନେ ମାଡ ଖାଇଥାନାକୁ ଏତଲା ଦେବା ପାଇଁ ଯାଇଥିଲୁ। ଆମର ଏତଲା ଲାଞ୍ଜିଗଡର ଥାନାର ଓ.ଆଇ.ସି. ଗ୍ରହଣ କଲେନାହିଁ। ଏ ଭଳି ଅତ୍ୟାଚାର ଓ ନିର୍ମମ ମାଡ ଦେଉଛନ୍ତି କମ୍ପାନୀର ଲୋକ ପ୍ରଶାଶନକୁ କହିଲେ

ପ୍ରଶାସନ ଶୁଣୁନାହିଁ । ଏଣୁ ଆମେ ସମସ୍ତଲୋକ ମୁଖ୍ୟମନ୍ତ୍ରୀ ଭିତ୍ତିପ୍ରସ୍ତର ସ୍ଥାପନ କରିଥିବା ଫଳକକୁ ରାଗରେ ଯାଇ ଭାଙ୍ଗିଦେଇଥିଲୁ । ମୁଖ୍ୟମନ୍ତ୍ରୀ ଆସିବା ଦିନ ଆମ୍ଭେମାନେ ଦାବୀପତ୍ର ଦେବାପାଇଁ ପ୍ରସ୍ତୁତ ହୋଇଥିଲୁ । ଆମର ଗାଁ ମାନଙ୍କୁ ଆସି ପୁଲିସ ମୁଖ୍ୟମନ୍ତ୍ରୀର ସୁରକ୍ଷା ନିମନ୍ତେ ଆମ ମାନଙ୍କୁ ଛାଡି ଦେଲାନାହିଁ ଯିବାପାଇଁ । ଏଣୁ ବିରକ୍ତର ସହିତ ୩ଦିନ ନ ପୁରୁଣୁ ଫଳକକୁ ଭାଙ୍ଗିଦେଇଥିଲୁ । ଏହି ଫଳକ ଭଙ୍ଗା କେସରେ ଦୁଇଜଣଙ୍କୁ ଜେଲ ମଧ ହୋଇଗଲା । ଏହିଭଳି ଭାବରେ ଆମ୍ଭେମାନେ ଆନ୍ଦୋଳନ କରିଆସୁଛୁ ।

ଆମ୍ଭମାନଙ୍କ ମଧ୍ୟରୁ ଅନେକ ଲୋକଙ୍କର ଘରଡିହ ନାହିଁ । ଅନେକ ଲୋକଙ୍କର ଜମିବାଡି ନାହିଁ । ସରକାର ଆମ୍ଭମାନଙ୍କୁ ଘରଡିହ ଓ ଜମିଦେବା କଥା, କିନ୍ତୁ ତାହା ନକରି ଆମ୍ଭମାନଙ୍କୁ ବାସଚ୍ୟୁତ କରୁଛି । ଏହା ସରକାରର କେଉଁ ନିୟମରେ ଅଛି । ଆମ୍ଭେମାନେ ଜଙ୍ଗଲ ପାହାଡରେ ଝରଣାର ପାଣିପିଇ ବଞ୍ଚୁଛୁ । ମାଇନିଙ୍ଗ ହେଲେ ଝରଣା ସୁଖିଯିବ । ଫଳମୂଳ ମିଳିବ ନାହିଁ । ସେଥିପାଇଁ ଆମେ ମାଁ ମାଟିକୁ ଛାଡିବୁ ନାହିଁ । ବହୁତ ଦୁଃଖର କଥା ନିୟମଗିରି ଜଙ୍ଗଲ ଭିତରେ ଯେଉଁମାନେ ଅଛନ୍ତି ସେମାନଙ୍କର ଦୁଃଖ କହିଲେ ନସରେ । ନିୟମଗିରି ଜଙ୍ଗଲ ଭିତରେ ୧୫୦୦୦ଖଣ୍ଡିଏ ଲୋକ ବାସ କରୁଛନ୍ତି । ୫୦ରୁ ୧୦୦ଖଣ୍ଡିଏ ଗାଁ ଅଛି । ସେମାନଙ୍କୁ ଆମେ ଝରନିଆ କହୁଛୁ । ସେହି ଝରନିଆମାନେ ଜଙ୍ଗଲରେ ଅଁଦା, ହଳଦି, ଆମ୍ବ, ପଣସ, କାନ୍ଦୁଲ ଓ ମାଣ୍ଡିଆ ଚାଷକରି ବଞ୍ଚୁଛନ୍ତି ଓ ସପ୍ତାହରେ ଥରେ ଲୁଣ ଆଉ ଲଙ୍କା, କପଡା କଣିବା ପାଇଁ ୧୫, ୨୦ କିଲୋମିଟର ଯାଉଛନ୍ତି । ଲାଞ୍ଜିଗଡ କିମ୍ବା ମୁନିଗୁଡା ବଜାର ଯିବାକୁ ପଡିଥାଏ । ସେଇ ଝରଣାରେ ରହୁଥିବା ଆଦିବାସୀ ଓ ଅଣ ଆଦିବାସୀ ହଳଦ୍ୱାରା ଚାଷ କରି ଯାଣନ୍ତି ନାହିଁ । କୁତୁକି ଚାଷ କରି ଯାଣିଛନ୍ତି । ଚିରାକନା ଦେହରେ ଘୋଡେଇ ହୋଇ ବର୍ଷସାରା ଶିତ ଖରାରେ ପାହାଡରୁ ଫଳମୂଳ ସଂଗ୍ରହ କରି ବଜାରକୁ ବିକ୍ରି କରିବାକୁନିଅନ୍ତି । ସେଥିରୁ ଯାହା ପଇସାମିଳେ ସେହି ପଇସାରେ ଚାଉଳ ଓ ଲୁଣ କିଣି ଫେରନ୍ତି । କମ୍ପାନୀ ଆସିବା କଥାଶୁଣି ଏହି ଲୋକମାନେ ମଧ କହୁଛନ୍ତି, କମ୍ପାନୀର ଯେ କୌଣସି ଲୋକ ଆସିଲେ ତାଙ୍କୁ ତଡିଦେବା । ଆମର ମାଁ ମାଟିକୁ ଛାଡିବୁ ନାହିଁ । ମାଁ ମାଟି ଲାଗି ଜୀବନ ଦେବୁ ପଛେ କମ୍ପାନୀ କରେଇ ଦେବୁ ନାହିଁ । ମରିବୁ ପଛେ ଡରିବୁ ନାହିଁ, ଜନମ ମାଟି ଛାଡିବୁ ନାହିଁ । ନିୟମଗିରି ସୁରକ୍ଷା ସମିତି ନାଁରେ ଡାକରା ଦେଇ ଆମ୍ଭେମାନେ ଆନ୍ଦୋଳନ ଜାରି ରଖିଛୁ ।



# ପ୍ରାକୃତିକ ସମ୍ପଦ ସୁରକ୍ଷା ଜନ ଆନ୍ଦୋଳନ ଅପରିହାର୍ଯ୍ୟ

*ପ୍ରଫୁଲ୍ଲ ସାମନ୍ତରା*

ଓଡ଼ିଶାର ଭୂତଳ ସମ୍ପଦ ଭରପୁର ଅଛି ବୋଲି ଡିଣ୍ଡିମ ପିଟି ସେଗୁଡିକୁ ବିକାଶନାମରେ କେତେକ ମୁଷ୍ଟିମେୟ ପୁଞ୍ଜିପତି ଓ ବିଦେଶୀ କମ୍ପାନୀଙ୍କ ମୁନାଫା ପାଇଁ ଶେଷ କରିଦେବାକୁ ସରକାରଙ୍କ ନିଷ୍ପତ୍ତି କେବଳ ସଂବିଧାନ ବିରୋଧୀ ନୁହେଁ, ବରଂ ଭବିଷ୍ୟତ ମଣିଷ ସମାଜ ପ୍ରତି ମଧ୍ୟ ଘୋର ଅନ୍ୟାୟ ବୋଲି ସ୍ୱୀକାର କରିବାକୁ ହେବ । ପ୍ରଥମତଃ ଓଡ଼ିଶା ପ୍ରାକୃତିକ ସମ୍ପଦର ପ୍ରାଚୁର୍ଯ୍ୟ ଭିତରେ ଅଛି ଅଥଚ ଏଠାର ଜନତା ଅତି ଦରିଦ୍ର ବୋଲି କାନ୍ଦୁଥିବା ରାଜନୈତିକ ନେତାମାନଙ୍କ ସମେତ ତଥାକଥିତ ବିକାଶ ପାଠର ଅନୁଗତ ବିଶେଷଜ୍ଞମାନଙ୍କ ମାନସିକତାରେ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ବିଗତ ୫୦ବର୍ଷ ମଧ୍ୟରେ ଓଡ଼ିଶାର ପ୍ରାକୃତିକ ସମ୍ବଳକୁ ଯେପରି ଭାବରେ ଧ୍ୱଂସ କରାଯାଇଛି ବିକାଶର ଦ୍ୱାହି ଦେଇ ତାହାର ପରିମାଣର ମୂଲ୍ୟ କେତେ କାହା ପାଖରେ ଏପର୍ଯ୍ୟନ୍ତ ହିସାବ ନାହିଁ । ଜଙ୍ଗଲ ଓ ଜମିର ଅବକ୍ଷୟ ହେବା ବ୍ୟତୀତ ଖଣିଜ ସମ୍ପଦର ବିଲୟ ଯେଉଁ ହାରରେ ଘଟୁଛି ତାହାର ମୂଲ୍ୟାୟନ ଏକାନ୍ତ ଜରୁରୀ । ପ୍ରଥମତଃ, ଏହାର ବିଲୟ କିମ୍ବା ଉତ୍ତୋଳନ ଯୋଗୁଁ ସେହି ଅଞ୍ଚଳର ମାଟିର ମଣିଷମାନଙ୍କ ଜୀବନ ଓ ଜୀବିକା ପ୍ରତି ହୋଇଥିବା କ୍ଷତିର ପରିମାଣ ସାଙ୍ଗକୁ ସେମାନଙ୍କ ସାମାଜିକ ଓ ଆର୍ଥିକ ସୁରକ୍ଷାର ଅବସାନର ମୂଲ୍ୟାୟନ କରିବାକୁ ହେବ । ଦ୍ୱିତୀୟତଃ, ଏହି ଅମୂଲ୍ୟ ସମ୍ପଦର ଅବସାନ ପରେ ପରିବେଶ ଗତ କ୍ଷୟକ୍ଷତି ସାଙ୍ଗକୁ ପ୍ରକୃତିର ସନ୍ତୁଳନରେ ଯେଉଁ ବିପଦ ଆସିଛି ତାହା ଜୀବଜଗତ ବିଶେଷ କରି ମଣିଷ ସମାଜର ସ୍ଥାୟୀତ୍ୱ ପ୍ରତି କେତିକି ଅନିଶ୍ଚିତତା ସୃଷ୍ଟି କରିଛି ତାହାର ଆକଳନ ହେବା ଏକ ଜାତୀୟ ଓ ମାନବୀୟ କର୍ତ୍ତବ୍ୟ । ତୃତୀୟତଃ, ଶେଷ ହୋଇ ଯାଉଥିବା ସମସ୍ତ ଖଣିଜ ସମ୍ପଦ ଗୁଡିକର ପୁନଃ ଅର୍ଜନ ହେବା ସମ୍ଭାବନା ଅଛିକି ? ଯଦି ଅଛି, କାହାର ଓ କେତେ ସମୟ ମଧ୍ୟରେ । ଯଦି ନାହିଁ, ତାହାର ସଂରକ୍ଷଣର ଆବଶ୍ୟକତା ଅଛି କି ନାହିଁ । ଏସବୁର ବିଚାର ଓ ନିଷ୍ପତ୍ତି ହେବା ଆଉ ଏକ ଜାତୀୟ ଓ ମାନବୀୟ କର୍ତ୍ତବ୍ୟ । ଶେଷରେ ଯେତିକି ଆମ ଭୂତଳ ସମ୍ପଦକୁ ଆମେ ହରାଇଛୁ କିମ୍ବା ଲୁଟ କରିବାକୁ ଦେଇ ବିକାଶର ସଫଳତାରେ ରାଜନୈତିକ ଓ ପ୍ରଶାସନିକ ବାହାଦୁରୀ



ନିଆଯାଇଛି - ସେଗୁଡିକ ବଦଳରେ ରଜ୍ୟ କେତେ ପାଇଛି । ଜନତା କଣ ପାଇଛି ଓ ପୁଞ୍ଜିପତି, ବେପାରୀମାନେ କେତିକି ପାଇଛନ୍ତି ? ଏବଂ ଆଜି ଜଗତୀକରଣ ଫଳରେ ଆସୁଥିବା ବିଦେଶୀ ପୁଞ୍ଜିର କରାମତିରେ ଯେଉଁ ହାରରେ ଖଣିଜ ସମ୍ପଦର ବିନିଯୋଗ ନାମରେ ଭୂଇଁତଳ ଖାଲି ହୋଇଯିବ ସେସବୁର ଲାଭର ହକ୍‌ଦାର କିଏ ହେବାକୁ ଯାଉଛି । କାହାର ଆବଶ୍ୟକତାକୁ ଅଗ୍ରାଧିକାର ଦିଆଯାଇ ଏସବୁ ବିକାଶର ଧ୍ୱଜା ଉଡାଇଛନ୍ତି ? ଏଠି ଠିକ୍ ନୂଆ ବିଚାରର ଆବ୍ୟକତା ଅତି ଜରୁରୀ । ତାହା ହେଲା ଆଧୁନିକ ପ୍ରଯୁକ୍ତିବିଦ୍ୟା ଆମ ହାତରେ ଅଛି ବୋଲି ତାକୁ ବ୍ୟବହାର କରି ସବୁକିଛି ସମ୍ବଳକୁ ଶିକାର କରିବା କ'ଣ ଯଥାର୍ଥ ? ତେଣୁ ଓଡ଼ିଶାରେ ଆଉ ପର୍ଯ୍ୟାପ୍ତ ଖଣିଜ ସମ୍ପଦ ଓ ଜଙ୍ଗଲ ନାହିଁ । ବରଂ ଏ ଗୁଡିକର ସମାପ୍ତିରେ ଜୀବିକା ହରାଇ ଲୋକେ ଦରିଦ୍ରରୁ ଦରିଦ୍ରତମ ଅବସ୍ଥାକୁ ଯାଇଛନ୍ତି । ବର୍ତ୍ତମାନ କହିବାକୁ ହେବ ଯେ ପ୍ରାକୃତିକ ସମ୍ପଦର ହରଣ ଦାରିଦ୍ର୍ୟର ମୂଳକାରଣ ।

ଆଜି ଓଡ଼ିଶାର ବକ୍‌ସାଇଟ୍ ପୃଥିବୀର ଡଲାର ଖେଳାଳୀମାନଙ୍କ ପାଇଁ ହୋଇଛି ଗରମ ପିଠା । କିନ୍ତୁ ବକ୍‌ସାଇଟ୍‌କୁ କେବଳ ଆଲୁମିନା ପାଇଁ ପ୍ରକୃତି ସୃଷ୍ଟି କରିନାହିଁ । ଏହାଠାରୁ ବଳି ହଜାର ହଜାର ବର୍ଷ ଧରି ପ୍ରାକୃତିକ ପରିବେଶର ସନ୍ତୁଳନ ରକ୍ଷା କରିଆସୁଛନ୍ତି ବକ୍‌ସାଇଟ ପରି ଅନେକ ସମ୍ବଳ ଯାହାର ଉପସ୍ଥିତିରେ ଜୈବ ବିବିଧତା ଓ ଜୀବଜଗତ ବଞ୍ଚି ରହିଆସିଛି । ବକ୍‌ସାଇଟ ଖଣି ଯେଉଁଠି ଅଛି ସେଠି ଜଳର ଉତ୍ସ ସର୍ବଦା ଜୀବନ୍ତ ଓ ଅମର । ବକ୍‌ସାଇଟ ଖୋଳି ବାହାର କରିଦେବା ପରେ ଝରଣା ଶୁଖି ଯାଉଛି ଓ ଥିବା ନଦୀ ନାଳ ଆଲୁମିନା ଉତ୍ପାଦନ ପରେ ଫ୍ଲୋରାଇଡ ଦ୍ୱାରା ପ୍ରଦୂଷିତ ଓ ନାଲି କାଦୁଅ ଦ୍ୱାରା ମରୁଭୂମିର ସୃଷ୍ଟି ହେଉଛି । ଏସବୁକୁ ପରୀକ୍ଷା କରି ନିଷ୍ପତ୍ତି ନେବା ପାଇଁ ଏପର୍ଯ୍ୟନ୍ତ ଆମ ଦେଶର ବିକାଶ ବିଶେଷଜ୍ଞମାନେ ଓ ରାଜନୈତିକ ନେତା ଓ ଶାସକମାନେ ଏକ କାର୍ଯ୍ୟକ୍ଷମ ବ୍ୟବସ୍ଥା ପାଇଁ ମାନସିକ ସ୍ତରରେ ଗ୍ରହଣ କରିପାରି ନାହାଁନ୍ତି । ଏହା କଣ ଆମ ବୌଦ୍ଧିକ ଶ୍ରେଣୀର ଅନଗ୍ରସରତା ନୁହେଁକି ? ବିକଶିତ ଓ ଧନୀରାଷ୍ଟ୍ରମାନଙ୍କ ପରିଚାଳକମାନେ ପ୍ରକୃତି ପ୍ରତି ନିଜେ ସୃଷ୍ଟି କରିଥିବା ବିପଦ ଗୁଡିକ ପ୍ରତି ସଚେତନ ହେଲେଣି । ତେଣୁ ନିଜ ନିଜ ଦେଶର ପ୍ରାକୃତିକ ସମ୍ବଳର ସଂରକ୍ଷଣ ସାଙ୍ଗକୁ ମଣିଷ ଜୀବନ ପ୍ରତି ଶତୃତା କରୁଥିବା ପ୍ରଦୂଷିତ ଶିଳ୍ପ ଗୁଡିକୁ ଉଠାଇ ନେଇ ଗରିବ ଦେଶମାନଙ୍କରେ ଗରିବ ଲୋକଙ୍କ ବିକାଶ ରଥର ଚକ ରୂପେ ଥୋଇ ସେଠାର ପ୍ରାକୃତିକ ସମ୍ପଦଗୁଡିକୁ ଲୁଟ କରିବାକୁ ନୂଆ ନୂଆ ଆନ୍ତର୍ଜାତିକ ସଂଗଠନ ତିଆରି କରିସାରିଲେଣି । ପୁଣି ଆମ ପରି ଗରିବ ଦେଶମାନଙ୍କ ସମ୍ମତିରେ ଯଦିବ ଦେଶର ଜନତାଙ୍କୁ କେହି ପଚାରି

ନାହିଁ । ବର୍ତ୍ତମାନ ଏପରି ଏକ ନୂଆ ଶକ୍ତିଶାଳୀ ଶୋଷଣ ପ୍ରକ୍ରିୟାର ଶକ୍ତି ଭଣ୍ଡାର ହେଉଛି ବିଶ୍ୱ ବାଣିଜ୍ୟ ସଂସ୍ଥା, ଯଦିଚ ବିଶ୍ୱବ୍ୟାଙ୍କ ଓ ବିଶ୍ୱ ମୁଦ୍ରାପାଣ୍ଠି ଆଗରୁ ଏହି କାର୍ଯ୍ୟର ସହାୟକ ରୂପେ କାମ କରିଆସୁଛନ୍ତି । ଆମର ବିଶେଷଜ୍ଞ ମଣ୍ଡଳୀ ଓ ବିଶ୍ୱ ବିଦ୍ୟାଳୟର ପ୍ରଫେସରମାନେ ଟିକିଏ ହେଜିବେ କି ? ତାହାହେଲେ ଯାଇ ଭୋଟ ସର୍ବସ୍ୱ ବିଧାୟକ ଓ ସାଂସଦ ମାନଙ୍କ କିଛିଟା ଜ୍ଞାନ ଉଦୟ ହୁଅନ୍ତା ।

ଏଠାରେ ସବୁକଥା କୁହାଯିବା ସମ୍ଭବପର ନୁହେଁ । କେବଳ ବିଶେଷ ସୂଚନା ପାଇଁ କ୍ରୋମର ଦୁର୍ବିସହ ସ୍ଥିତି ଉଲ୍ଲେଖ କରୁଛି । ଦିଲ୍ଲୀ ସାଇନ୍ସ ଫୋରମ ତରଫରୁ ବିଶିଷ୍ଟ ଅର୍ଥନୈତିଜ୍ଞ ଅରୁଣ ଘୋଷଙ୍କ ଦ୍ୱାରା ପ୍ରସ୍ତୁତ ଏକ ପୁସ୍ତିକା (The story of Orisa Chromite ores)ରେ ବୈଜ୍ଞାନିକ ଅନୁଧ୍ୟାନକୁ ହିସାବକରି କହିଛନ୍ତି ଯେ ପରିବେଶ ପ୍ରତି ଆଖିବୁଜି ଦେଇ ମନଇଚ୍ଛା କ୍ରୋମ ଲିଜ ଦେବାରେ କୌଣସି ବିଜ୍ଞାନ ସମ୍ମତ ନୀତି ଅବଲମ୍ବନ ନକରାଯାଇଥିବା ଯୋଗୁଁ ଆଜିପର୍ଯ୍ୟନ୍ତ (୧୯୯୭) ୫୩.୮୨ ଲକ୍ଷ ମେଟ୍ରିକ ଟନ କେବଳ ଫୋପାଡି ଦେବାପରି ନଷ୍ଟ କରିଦିଆଯାଇଛି । ତାହାର ମୂଲ୍ୟ ୪୯୫୬କୋଟି ଟଙ୍କା । ପୁଣି ଆସନ୍ତା ୩୦ବର୍ଷ ମଧ୍ୟରେ ବର୍ତ୍ତମାନର ଜଗତୀକରଣ ଓ ଘରୋଇକରଣ ପ୍ରକ୍ରିୟାରେ କ୍ରୋମ ଶେଷ ହୋଇଯିବ ଏବଂ ଆଗକୁ କ୍ଷତି ପ୍ରାୟ ୫୦ ହଜାର କୋଟି ଟଙ୍କା ମୂଲ୍ୟର ମୃତ କ୍ରୋମ ବର୍ଜ୍ୟବସ୍ତୁରେ ପରିଣତ ହେବ ଏବଂ ପରିବେଶ ପ୍ରତି ଘୋର ବିପଦ ସୃଷ୍ଟି କରିବ । ଏହି ଦଲିଲକୁ ଓଡ଼ିଶା ସରକାର ଓ କେନ୍ଦ୍ର ସରକାର ଦୃଷ୍ଟିକୁ ନେଇନଥିବା ଏକ ଅକ୍ଷମଣୀୟ ଅପରାଧ । ଲୁହାପଥର ଟାଟାକୁ ମାତ୍ର ୧୧ଟଙ୍କାରେ ଏକ ଟନ୍ ପିଛା ଦିଆଯାଉଥିବା ବେଳେ ତାର ବଜାର ମୂଲ୍ୟ ୧୫୦ଟଙ୍କାରୁ ଉର୍ଦ୍ଧ୍ୱ । ସେହିପରି ଦେଶୀ ବିଦେଶୀ କମ୍ପାନୀମାନଙ୍କୁ ବକ୍ସାଇଟ୍ ଟନ୍ ପିଛା ୪୨ଟଙ୍କାରେ ଦିଆଯାଉଥିବାବେଳେ ତାର ଦାମ ୧୬୦ଟଙ୍କାରୁ ଅଧିକ । ଏହା ଲୁଟ ନୁହେଁ ତ ଆଉ କଣ ?

ପ୍ରାକୃତିକ ସମ୍ପଦ ହେଉଛି ସୀମିତ ଓ କ୍ଷୟଶୀଳ । ଏହାକୁ ପୁନଃ ସୃଷ୍ଟି କରାଯାଇନପାରେ । ତେଣୁ ଏସବୁର ବ୍ୟବହାରରେ ସୀମା ନିର୍ଦ୍ଧାରଣ ସହ ମିତବ୍ୟୟତା ବାଧ୍ୟତାମୂଳକ ହେବା ବାଞ୍ଛନୀୟ । ପୁଣି ଜାତୀୟ ଆବଶ୍ୟକତା ଓ ଆଞ୍ଚଳିକ ଜନତାଙ୍କ ଜୀବିକାର ଗ୍ୟାରେଣ୍ଟି ମଧ୍ୟରେ ଏକ ସମନ୍ୱୟ ଦୃଷ୍ଟି ଭଙ୍ଗି ସହ ବିଜ୍ଞାନ ସମ୍ମତ ବ୍ୟବହାର ଉପରେ ଏକ ଜାତୀୟ ନୀତିର ଆବଶ୍ୟକତା ରହିଛି । ୟୁରୋପ ତଥା ପୃଥିବୀର ବହୁଦେଶରେ ମଦ ଠିପି ସହ ମଦପିଇବା କପ ଆଲୁମିନିୟମରେ ତିଆରି । ତାହାର ଚାହିଦା



ସହ ଯୁଦ୍ଧ ବିମାନରେ ବିଶେଷ ବ୍ୟବହୃତ ଆଲୁମିନାର ଆବଶ୍ୟକତାକୁ ପୂରଣ କରିବା ପାଇଁ ସାଧାରଣ ଜନତା ତଥା ଆଦିବାସୀଙ୍କ ଜୀବନ ଜୀବିକା ତଥା ଅମୂଲ୍ୟ ଜୈବିକ ବିବିଧତା ତଥା ଜୀବନ ରେଖା ପାଣିର ଉତ୍ସକୁ ବଞ୍ଚାଇ ରଖିଥିବା ବକ୍ସାଇଟ୍‌କୁ ବ୍ୟବସାୟିକ ବସ୍ତୁରେ ପରିଣତ କରିଦେବା କେତେ ଦୂର ଯୁକ୍ତିଯୁକ୍ତ ତାହା ଏକ ସଭ୍ୟ ସମାଜର ବିବେକୀ ନାଗରିକମାନେ ଚିନ୍ତା କରିବା ଆଜିର ଆହ୍ୱାନ ।

ଓଡ଼ିଶାରେ ଆଗରୁ ନାଲକୋ ଜରିଆରେ ଆମ ଦେଶ ଆଲୁମିନା ରପ୍ତାନୀ କରୁଛି । ଉତ୍ପାଦନରେ ଆମେ ଆତ୍ମନିର୍ଭରଶୀଳ । ତେଣୁ ଅଧିକା ଉତ୍ପାଦନ ପାଇଁ ବିଦେଶୀଙ୍କୁ ଆଣି କିମ୍ବା ଦେଶୀୟ ପୁଞ୍ଜିପତିମାନଙ୍କ ହାତରେ ବକ୍ସାଇଟ ଖଣି ଅର୍ପଣ କରି ଏକ ଡଜନ ଆଲୁମିନା ଶିଳ୍ପ ପ୍ରତିଷ୍ଠା ପାଇଁ ଚାଲିଥିବା ଉଦ୍ୟମ ବାସ୍ତବରେ ବିକାଶ ନୁହେଁ ବରଂ ବିନାଶର ଏକ ଖେଳ । ଏକଥା ସତ୍ୟ, କାଶୀପୁର ଆଦିବାସୀ ଉତ୍କଳ ଆଲୁମିନା ଇଣ୍ଟର ନ୍ୟାସନାଲ ଲି଼କୁ ଅଟକାଇ ରଖିପାରିଛନ୍ତି ଶାନ୍ତିପୂର୍ଣ୍ଣ ଜନ ଆନ୍ଦୋଳନ ଜରିଆରେ । ବିଗତ ଆଠ ବର୍ଷ ଧରି ସମସ୍ତ ପ୍ରକାର ପୋଲିସ ଜୁଲମର ଶିକାର ହୋଇବି ନିଜ ଜୀବନ ଓ ଜୀବିକାର ସୁରକ୍ଷା ପାଇଁ ପ୍ରାକୃତିକ ସମ୍ପଦର ସୁରକ୍ଷା ଆନ୍ଦୋଳନ ଚଳାଇଛନ୍ତି । ଏପରିକି ୨୦୦୦ ଡିସେମ୍ବର ୧୬ତାରିଖରେ ୩ଜଣ ଯୁବକ ଆଦିବାସୀ ଭାଇ ପୋଲିସ ଗୁଳିରେ ଶହୀଦ ହୋଇଯାଇଛନ୍ତି । ଏପରି ତ୍ୟାଗ ସତ୍ତ୍ୱେ ଓଡ଼ିଶାର ଶାସକ ଶ୍ରେଣୀ ଓ ପ୍ରଶାସକ ଗୋଷ୍ଠି ଏହି ଜନ ଆନ୍ଦୋଳନର ମୂଳରେ ଥିବା ଲୋକଶକ୍ତିର ମାହାତ୍ମ୍ୟକୁ ଉପଲବ୍ଧ କରିବାରେ ବିଫଳ ହୋଇ କୌଣସି ଏକ ଏନ.ଜି.ଓ. ସଂଗଠନ ଉପରେ ଅଠା ବୋଳିବାର ଅପଚେଷ୍ଟା ଜାରି ରଖିଛନ୍ତି । ସତେ ଯେପରିକି ଏନ୍.ଜି.ଓର ସହଯୋଗ ବିନା ଆନ୍ଦୋଳନ ହେଉ ନାହିଁ । ଏପରି ଅଧ୍ୟୟନ ଭୁଲ୍ । ଲୋକେ କାହାରି ଉପରେ ନିର୍ଭରଶୀଳ ନୁହନ୍ତି । ସେମାନେ ନିଜ ସଚେତନ ହେବା ପରେ ଲୋକଶକ୍ତିକୁ ବ୍ୟବହାର କରୁଛନ୍ତି । କେବଳ କମ୍ପାନୀମାନଙ୍କର ଦଲାଲ ଭୂମିକାରେ ରହି ରାୟଗଡାର କେତେକ ଜିଲ୍ଲା ପ୍ରଶାସକମାନେ ଆନ୍ଦୋଳନରେ ବାସ୍ତବତାକୁ ସରକାର ପାଖରେ ଉପସ୍ଥାପିତ କରିବା ବଦଳରେ ସେମାନଙ୍କୁ ଏକ ଏନ୍.ଜି.ଓ. ସଂସ୍ଥା ବିରୋଧରେ ଅଭିଯୋଗ କରିଆସୁଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ କମ୍ପାନୀର ବୋଲକରା ଏଜେଣ୍ଟଭାବେ କାର୍ଯ୍ୟକରୁଥିବା ଜିଲ୍ଲାପାଳ ଉମା ମିଶ୍ର ଦୁର୍ନୀତି ଅଭିଯୋଗରେ ଅଭିଯୁକ୍ତ । ସେଇ ଅଫିସରମାନଙ୍କ ପୁରୁଣାମତକୁ ପୁଣି ନୂଆ ଭାବରେ ଉପସ୍ଥାପିତ କରୁଥିବା ପ୍ରଶାସକମାନେ ପୁଣି ଆଉଥରେ ଭିତରକୁ ଆଖି ପକାନ୍ତୁ ଜାଣିପାରିବେ ଲୋକେ କଣ ଚାହାଁନ୍ତି । ଆଲୁମିନା କାରଖାନା ନା ଆଦିବାସୀଙ୍କ ନା

ରାଜ୍ୟବାସୀଙ୍କ ଦାରିଦ୍ର୍ୟ କମାଇ ପାରିବ ବରଂ ଅଧିକ ଦାରିଦ୍ର୍ୟ ସୃଷ୍ଟି କରି ଏକ ଅଞ୍ଚଳର ପ୍ରାକୃତିକ ସମ୍ପଦକୁ ଶେଷ କରି ସେଠାର ସମାଜର ଅସ୍ମିତାକୁ ଖତମ କରିଦେବ ।

ତେଣୁ ମୁଖ୍ୟମନ୍ତ୍ରୀ ଜିଲ୍ଲାପାଳଙ୍କ ସମ୍ମିଳନୀରେ ଯେଉଁ ପ୍ରଶାସନିକ ପରାମର୍ଶ ଓ ସୁପାରିଶ ପାଇଛନ୍ତି ତାହା ଲୋକବିରୋଧୀ ଓ କମ୍ପାନୀମାନଙ୍କ ସେବାପାଇଁ ଉଦ୍ଦିଷ୍ଟ ।

## ସମ୍ବିଧାନ ଓ ଗ୍ରାମସଭା ଅଧିକାର:

ବହୁଦିନ ଧରି ସମ୍ବିଧାନର ୫ମ ଅନୁଚ୍ଛେଦରେ ରହିଥିବା ଆଦିବାସୀ ଅଞ୍ଚଳର ସୁରକ୍ଷା ତଥା ପ୍ରାକୃତିକ ସମ୍ପଦ ଉପରେ ସେଠାର ଅଧିବାସୀଙ୍କ ଅଧିକାର ପ୍ରତି ଅବମାନନା କରି କେନ୍ଦ୍ର ଓ ରାଜ୍ୟ ସରକାରମାନେ ବିଗତ ୫୦ବର୍ଷ ଧରି ବେଆଇନ ଓ ଅସାମ୍ବିଧାନିକ କାର୍ଯ୍ୟକରି ଆସୁଛନ୍ତି । ୧୯୯୭ରେ ସମତା ବନାମ ଆନ୍ଧ୍ରପ୍ରଦେଶର ଏକ କେସ୍‌ରେ ସୁପ୍ରିମକୋର୍ଟ ସ୍ପଷ୍ଟ ରାୟ ଦେଲେ ଯେ ସମ୍ବିଧାନର ୫ମ ଅନୁଚ୍ଛେଦ ଅନୁଯାୟୀ ଆଦିବାସୀ ଅଞ୍ଚଳରେ ଜମି, ଜଙ୍ଗଲ, ପାଣି ଓ ଖଣି ଅଣ-ଆଦିବାସୀଙ୍କୁ ହସ୍ତାନ୍ତର ବେଆଇନ । ଏହାର ସୁରକ୍ଷା ପାଇଁ ଆନ୍ଧ୍ରପ୍ରଦେଶ ପରି ଅନ୍ୟ ରାଜ୍ୟମାନଙ୍କରେ ଆଇନ ପ୍ରଣୟନ କରାଯାଇ ୫ମ ଅନୁଚ୍ଛେଦକୁ କାର୍ଯ୍ୟକାରୀ କରାଯାଉ ବୋଲି ସୁପ୍ରିମକୋର୍ଟ ନିର୍ଦ୍ଦେଶ ଦେଇଛନ୍ତି । ଏପରି ଏକ ଐତିହାସିକ ରାୟ କେବଳ କାହାରି ଜିତିବା ହାରିବା ପ୍ରଶ୍ନ ମଧ୍ୟରେ ଆବଦ୍ଧ ନୁହେଁ । ମୂଳ ପ୍ରଶ୍ନ - ପ୍ରାକୃତିକ ସମ୍ପଦର ବ୍ୟବହାର ଉପରେ କଟକଣା ତାହାର ସଂରକ୍ଷଣ ଓ ଏହା ସହିତ ଆଦିବାସୀଙ୍କ ଜୀବନ ଜୀବିକା ତଥା ସାମାଜିକ ବ୍ୟବସ୍ଥାର ସୁରକ୍ଷା ପ୍ରତି ସମ୍ବିଧାନରେ ଥିବା ବ୍ୟବସ୍ଥା ପ୍ରତି ସୁପ୍ରିମକୋର୍ଟ ସମ୍ମତି ଦେଇଛନ୍ତି । କିନ୍ତୁ ଏହାର ଅସଲ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ବଦଳରେ ଧର୍ମକୁ ଆଖିଠାରିଲା ପରି ଓଡ଼ିଶା ସରକାରଙ୍କ ଏକ ସବକମିଟି ଯେପରି ଭାବରେ ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶକୁ ସମୀକ୍ଷାକରି ମତ ଦେଇଛି ତାହା ସୁପ୍ରିମକୋର୍ଟ ଓ ସମ୍ବିଧାନର ନିର୍ଦ୍ଦେଶ ପ୍ରତି ଠକାମିର ପରିଚୟ । କେବଳ ସବକମିଟିକୁ ଏକ କୌଶଳ ରୂପେ ବ୍ୟବହାର କରି ଜମି, ଜଳ ଓ ଖଣିକୁ କିପରି କମ୍ପାନୀମାନଙ୍କୁ ହସ୍ତାନ୍ତର କରାଯାଇ ପାରିବ ସେଥିପାଇଁ ଆଇନର ପରିବର୍ତ୍ତନ କରିବା ପଦକ୍ଷେପ ଅସମ୍ବିଧାନିକ । ସୁପ୍ରିମକୋର୍ଟ ନିର୍ଦ୍ଦେଶରେ ସ୍ପଷ୍ଟ ଲେଖା ହୋଇଛି ଯେ ରାଜ୍ୟସରକାରମାନେ ଏପରି ପଦକ୍ଷେପ ନେବେ ଯାହାର ଫଳରେ ସମ୍ବିଧାନର ୫ମ ଅନୁଚ୍ଛେଦରେ ଉଲ୍ଲେଖ ଥିବା ଆଦିବାସୀ ଅଞ୍ଚଳର ପ୍ରାକୃତିକ ସମ୍ପଦର ସୁରକ୍ଷା ଓ ତାହା ଉପରେ ଆଦିବାସୀଙ୍କ ଅଧିକାରର ସୁରକ୍ଷାରେ କୌଣସି ସାଲିସ୍ କରାଯାଇପାରିବ ନାହିଁ ।

ତେଣୁ ରାଜ୍ୟ ଓ କେନ୍ଦ୍ର ସରକାର ଓଡ଼ିଶାର କାଶୀପୁର, ଲକ୍ଷ୍ମୀପୁର, ଯଶବନ୍ତପୁର, ଲାଞ୍ଜିଗଡ ଓ ଗନ୍ଧମାର୍ଦ୍ଦନ ଅଞ୍ଚଳରେ ବକ୍‌ସାଇଟ୍ ଖଣି ଖୋଲିବା ପାଇଁ ଯେପରି ଭାବରେ ନିଷ୍ପତ୍ତି ନେଇଛନ୍ତି ତାହା ସମ୍ବିଧାନର ୫ମ ଅନୁଚ୍ଛେଦ ଓ ସୁପ୍ରିମକୋର୍ଟଙ୍କ ରାୟର ଅବମାନନା କରାଯାଉଛି ।

ପୁଣି ଗ୍ରାମସଭା ଜରିଆରେ ଜବରଦସ୍ତ ସମ୍ମତି ଆଣିବା ପାଇଁ ପ୍ରଶାସନିକ କୌଶଳ ଆଉ ଏକ ଛଳନା ଓ ଆଇନ ବିରୋଧୀ । ପ୍ରଥମେ ଆଦିବାସୀ ଅଞ୍ଚଳରେ ପାରମ୍ପରିକ ନେତୃତ୍ୱରେ ଗ୍ରାମ ସଙ୍ଗଠନକୁ ଓଡ଼ିଶା ସରକାର ଏପର୍ଯ୍ୟନ୍ତ ସ୍ୱୀକୃତି ଦେଇନାହାଁନ୍ତି ଯଦିଚ ସାଂସଦରେ ଏହା ଗୃହୀତ ହୋଇଛି । ପୁଣି ତଥାକଥିତ ସରକାରୀ ଗ୍ରାମସଭାର ଅନୁମୋଦନ ଆଇନ ସମ୍ମତ ନୁହେଁ । ଏପରିକି କାଶୀପୁରରେ ବର୍ତ୍ତମାନ ଗ୍ରାମସଭାର ଅନୁମୋଦନ ପାଇଁ ସରକାର କହିଲାବେଳେ ପ୍ରଥମେ ବିନା ଗ୍ରାମସଭାର ଅନୁମୋଦନରେ ଆସିଥିବା ଉତ୍କଳ ଆଲୁମିନାକୁ ପ୍ରତ୍ୟାହର କରି ନିଆଯାଉ ଓ ଜମି ଅଧିଗ୍ରହଣକୁ ବେଆଇନ ଘୋଷିତ କରାଯାଉ । ପୁଣି ନୂଆ ଭାବରେ ଆଇନ ସମ୍ମତ ଗ୍ରାମସଭା ଗଠନ ଘୋଷଣା କରି ମୂଳରୁ ଜନମତ ସଂଗ୍ରହ କରାଯାଉ । ଲାଞ୍ଜିଗଡରେ ଗ୍ରାମସଭା ତଥା ଆଦିବାସୀମାନେ ନିୟମଗିରି ବକ୍‌ସାଇଟ୍ ଖୋଲିବା ଓ ଷ୍ଟେରେଲାଇଟ କମ୍ପାନୀର ଆଲୁମିନା ପ୍ଲାଣ୍ଟକୁ ବିରୋଧ କରୁଛନ୍ତି । ଜନ ଶୁଣାଣୀ ଓ ଗ୍ରାମସଭା ନାମରେ ପ୍ରଶାସନିକ ଅଫିସର ଓ ରାଜନୈତିକ ଦଳ ନେତାମାନେ ଜନପ୍ରିୟ ହେବା ବଦଳରେ ଶିଳ୍ପ ପ୍ରେମୀ ହୋଇଯାଉଛନ୍ତି । ଏପରି ଦୃଷ୍ଟି ଭଙ୍ଗୀର ମଧ୍ୟ ପରିବର୍ତ୍ତନ ଦରକାର ।

## ବିକାଶ ନାମରେ ନିୟମଗିରିକୁ ହତ୍ୟାକର ନାହିଁ:

କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ ବ୍ଲକ ଅଞ୍ଚଳରେ ଷ୍ଟେରେଲାଇଟ୍ କମ୍ପାନୀ ପାଇଁ ରାଜ୍ୟ ସରକାର ତାଙ୍କରି ପ୍ରଶାସନଙ୍କ ସମେତ କମ୍ପାନୀର ସାନିଧ୍ୟ ପାଇଁ ଲାଳାୟିତ ରାଜନୈତିକ ଦଳ, ବେପାରୀ, ପଇସାବାଲା, ଘରେ ଘରେ ଚାକିରି ମିଳିବାର ସ୍ୱପ୍ନ ଦେଖୁଥିବା ବିଚରା ସହରୀ ମଧ୍ୟବିତ୍ତ ପରିବାରମାନେ ଖୁବ୍ ତତ୍ପର କମ୍ପାନୀ ଶିଘ୍ର ହୋଇଯାଉ, ଅନେକଙ୍କ ଜୀବନ ପଛେ ଭାସିଯାଉ । ଏପରି ମାନସିକତା ପ୍ରଚଳିତ ଭୋଗବାଦୀ ସମାଜରେ ସର୍ବତ୍ର ବିଦ୍ୟମାନ । କାନ୍ଥର ଆରପଟକୁ ଦେଖିଲେ ଅଛି ଗାଁ ଗାଁରେ ଆଦିବାସୀ ସମାଜ, ଜମି ଅଛି, ଚାଷ ହେଉଛି, ଡଙ୍ଗର ଅଛି, ମକା, ଜହ୍ନୀ ଇତ୍ୟାଦି ମିଳୁଛି । ଝରଣା ଅନେକ ଅଛି,

ବର୍ଷା ଅଭାବରେ ମଧ୍ୟ ପାଣି ବହୁଛି । ଶୀତଦିନ ପ୍ରବଳ ଥଣ୍ଡାରୁ ମୁକ୍ତି ମିଳୁଛି ଶୁଖିଲା କାଠର ନିଆଁ ଗାଁ ଗାଁରେ ଲାଗିଛି ବୋଲି । ହସପିଟାଲ ସ୍ୱପ୍ନ, ଡାକ୍ତର କାହିଁକି ବା ଯିବ ଲୋକଙ୍କ ପାଖକୁ । ଔଷଧ ଲେଖିବ କିଏ, କିଣିବ କିଏ ? ରୋଗର ଏକମାତ୍ର ଚିକିତ୍ସା ଗାଁ ଗାଁର ବୁଢ଼ା ବଇଦ ଚାରାରୁ, ପତ୍ରରୁ, ମୂଳରୁ ଔଷଧ ତିଆରି କରୁଛି । ଯାହାର ଜମିନାହିଁ କିମ୍ବା ଜମି ଥାଇ ଚାଷ ନଥିବା ସମୟରେ ଜଂଗଲରୁ କାଠ ଆଣିବା ଠାରୁ ଫଳ, କଳା, ପତର ପାଇ ଜୀବିକା ଚଳାଇ ଦେଇଛି ବୋଲି ଏକ ସ୍ୱରରେ କହନ୍ତି ଝରିଗୁଡାଠାରୁ ଆରମ୍ଭକରି ବୋରିଂପଦର, ବାଣୀପଙ୍ଗା, ବାତିଲିମା, ଚୋଲମ୍ବା, କପାଗୁଡା, ବନ୍ଧାଗୁଡା, କେନାରୀ, ବେରଭଟା, ବସନ୍ତପଡା....ଗାଁର ଲୋକେ । ଏସବୁର ମୂଳରେ କିଏ ? କିଏ ସେହି ଜନନୀ ? ଯିଏ ଏସବୁ ହଜାର ହଜାର ବର୍ଷ ଧରି ଦେଇ ଆସୁଛି ! [illegible] ଅଲାଡି ମାଝି, ଡମା ମାଝି, ଦଇସିଂ ମାଝି ହୁଅନ୍ତୁ, କିମ୍ବା ଝରିଗୁଡାର ଆର୍ସି ମାଝି, କପାଗୁଡାର ଅଣ୍ଡି ମାଝି, ବସନ୍ତପଡାର ଭୁଜେନ୍ଦ୍ର ନାୟକ, ବୋରିଂପଦରର ପୂର୍ଣ୍ଣ ମାଝି, ଧୃତେନ୍ଦ୍ର ନୌତ ହୁଅନ୍ତୁ କିମ୍ବା ନିୟମଗିରି ସୁରକ୍ଷା ସଂଗ୍ରାମ ସମିତିର ସଭାପତି ଦୁର୍ଯ୍ୟୋଧନ ନାୟକ ସମ୍ପାଦକ ରବି ମାଝି ହୁଅନ୍ତୁ । ସମସ୍ତଙ୍କ ତୁଣ୍ଡରେ ଗୋଟିଏ ଉତ୍ତର "ଆମ ଜୀବନ, ଜୀବିକାର ମୂଳ: ମା' ନିୟମଗିରି" । ବକ୍ସାଇଟ୍ ଥିବା ଉକ୍ତ ମାଳି ଲଣ୍ଡା ପାହାଡ ନୁହେଁ । ଏକ ସବୁଜ ବଳୟ ଭିତରେ ଅସରନ୍ତି ପ୍ରାକୃତିକ ସମ୍ପଦର ରତ୍ନ ଭଣ୍ଡାର । ଅସରନ୍ତି କାହାପାଇଁ ? ରାୟଗଡା ଜିଲ୍ଲା ଓ କଳାହାଣ୍ଡି ଜିଲ୍ଲା ମଧ୍ୟରେ ନିୟମଗିରି ସୀମା ଭିତରେ ଶହ ଶହ ଗାଁର ଜୀବନ ପାଇଁ, ଜୀବିକା ପାଇଁ ଓ ସାମାଜିକ ଏବଂ ସାଂସ୍କୃତିକ ଅସ୍ମିତା ପାଇଁ । ନିୟମଗିରିର କୋଳରୁ ଜାତ "ବଂଶଧାରା" କେବଳ ଉକ୍ତ ଅଞ୍ଚଳର ଜୀବନ୍ୟାସ କରୁନାହିଁ, ବରଂ ନଦୀର ସ୍ରୋତ ଓଡ଼ିଶା, ଆନ୍ଧ୍ରପ୍ରଦେଶର ଲକ୍ଷ ଲକ୍ଷ ଜନତାଙ୍କ ସେବାରେ ନିୟୋଜିତ । ଏହି ରତ୍ନ ଭଣ୍ଡାର ଭିତରେ ଏପରି ଅନେକ ରତ୍ନ ମଧ୍ୟରେ ବକ୍ସାଇଟ୍ ଅନ୍ୟତମ ଯାହାର ଆବଶ୍ୟକତା କେବଳ ଆଲୁମିନା ପାଇଁ ଉଦ୍ଦିଷ୍ଟ ନୁହେଁ । ବକ୍ସାଇଟ୍‌ର ଉପସ୍ଥିତ ଜଳର ଉତ୍ସକୁ ଦୀର୍ଘସ୍ଥାୟୀ ରଖେ । ପୁଣି ବକ୍ସାଇଟ୍ ପାହାଡରେ ଥିବା ଜୈବ ବିବିଧତା ସମେତ ଅନେକ ଅଜଣା ପ୍ରକୃତିଦତ୍ତ ସଂସାଧନ ମଧ୍ୟରେ ସନ୍ତୁଳନ ରଖିଥାନ୍ତି । ନିୟମଗିରି ମାଟି ତଳେ ଥିବା ଅମୂଲ୍ୟରତ୍ନ ବକ୍ସାଇଟ୍‌କୁ କେବଳ ଆଲୁମିନା କମ୍ପାନୀର ମୁନାଫା, ବିଦେଶୀଙ୍କ ମଦଗିଲାସ ଓ ଯୁଦ୍ଧ ସାମଗ୍ରୀ ନିର୍ମାଣର ପାଇଁ ସମଗ୍ର ରତ୍ନ ଭଣ୍ଡାରକୁ ଧାରଣ କରିଥିବା ଧରିତ୍ରୀ ମା ନିୟମଗିରିର ଦେହରେ ଖଣ୍ଡା ଲାଗିଲେ ତାର ରକ୍ତରେ ତିଆରି ତଥା ତା ଖିର ଖାଉଥିବା ଆଦିବାସୀ ସମାଜ ବରଦାସ୍ତ କରିପାରିବ ନାହିଁ । ଏହି ସତ୍ୟତାକୁ ସ୍ୱୀକାର

କରିବାକୁ ହେବ ଆମ ସମସ୍ତଙ୍କୁ, ସରକାରଙ୍କୁ, ରାଜନେତାଙ୍କୁ, ବୁଦ୍ଧିଜୀବୀଙ୍କୁ ଏବଂ ସମସ୍ତ ସୁବିଧା ଭୋଗୀ ପ୍ରଶାସକ ତଥା ଭୋଗବାଦୀ ସମାଜକୁ ।

ଯୋଗଦେଇଥିଲି ପଦଯାତ୍ରାରେ ଗାଁକୁ ଗାଁ ଲୋକଙ୍କ ସାଥିରେ ଦୁଇଦିନ । ଭାବିଥିଲି ଲୋକଙ୍କୁ ବୁଝାଇବି ଆଲୁମିନା ପ୍ଲାଣ୍ଟର ବିଷ ମଂଜି ଓ ବିକାଶର ଧ୍ୱଂସଲୀଳା ସଂକ୍ରାନ୍ତରେ । ମୋ ଠାରୁ ଆଗରେ ଅଛନ୍ତି ଅପାଠୁଆ ପାହାଡ ତଳେ ଗାଁ ଲୋକେ । ସେମାନେ ଅଶିକ୍ଷିତ କିନ୍ତୁ ଅଜ୍ଞାନ ନୁହଁନ୍ତି, ସେମାନଙ୍କ ବିବେକପୂର୍ଣ୍ଣ ଜ୍ଞାନ ଏକ ଅଲିଭା ସଂସ୍କୃତିକୁ ବଞ୍ଚାଇ ରଖିପାରିଛି । ତାହାହେଲା ସ୍ୱାଭିମାନ ଭରା ସମାଜର ମେଳି ସାମାଜିକ ଜୀବନ ସହ ନିଜ ପାରିବାରିକ ଜୀବନର ଅବିଚ୍ଛିନ୍ନ ସମ୍ପର୍କ ଯାହାକି ବଜାର ଭିତ୍ତିକ ଭୋଗବାଦୀ ସମାଜରେ କଳ୍ପନାର ବାହାରେ ।

ଜିଲ୍ଲାପାଳ ଆସିଥିଲେ ଲୋକଙ୍କୁ ବୁଝାଇ କମ୍ପାନୀର ଓକିଲାତି କରିବା ପାଇଁ କହିଲେ ଚାକିରୀ ମିଳିବ । ଟଙ୍କା ମିଳିବ । ମଟର ସାଇକେଲ, ପେଣ୍ଟ ସାର୍ଟ, ଟିଭି ସବୁ କିଣିପାରିବ । ତାଆଗରୁ ଏପରି ଅନ୍ୟ ଅଫିସରମାନେ ଗାଁ ଗାଁରେ ବୁଝାଉଛନ୍ତି । ଉଦ୍ଦେଶ୍ୟ ଲୋକେ ଜମି ଛାଡିଦେବାକୁ ରାଜି ହୋଇ ଗାଁ ଛାଡି ଚାଲିଯାଆନ୍ତୁ । ବେଲମ୍ବାର ମୁଖିଆ ଅପାଠୁଆ ଦଇସିଂ ମାଝି ପଚାରିଲେ କଲେକ୍ଟରଙ୍କୁ "ଆମେ ତ ପାଠ ପଢ଼ିନାହୁଁ ଚାକିରୀ କିପରି ମିଳିବ ? ହଁ ଯଦି ଦେବ, ଆମେ ମରିଗଲା ପରେ ମଧ ଆମ ପୁଅନାତିକୁ ମଧ ଦେବ ବୋଲି ଲେଖି କରି ଦେଇପାରିବ କି ? ଆଦିବାସୀ ମୁହଁରୁ ଏପରି ଆଶାତୀତ ପ୍ରଶ୍ନ ଶୁଣି କଲେକ୍ଟର ପଚାରିଲେ "ତୁମେ କେତେ ପାଠ ପଢ଼ିଛ" ସେ କହିଲେ ମୁଁ ପାଠ ପଢ଼ିଥିଲେ ତମପରି ହୋଇଥାନ୍ତି । ଦଇ ସିଂଙ୍କ ନିର୍ଲିପ୍ତ ପ୍ରଶ୍ନ ଓ ଉତ୍ତର ଭିତରେ ଭରି ରହିଥିଲା - "ଆମ ମାକୁ ଆମେ ବିକ୍ରିକରି ପାରିବୁ ନାହିଁ" । ସବୁଶୁଣିବା ପରେ କଲେକ୍ଟର କହିଦେଲେ - ଜମି ତ ସବୁ ସରକାରର । ତୁମେ କିଛି କରିପାରିବ ନାହିଁ । ଏହା ଶୁଣି ଗାଁ ଲୋକେ କହିଲେ ତାହାହେଲେ ଆମ ପାଖକୁ ପଚାରିବାକୁ ଆସିଛ କାହିଁକି, ସରକାର ତ ନେଇଯିବ ନେଉ... ଆମ ଜୀବନ ଥିବା ପର୍ଯ୍ୟନ୍ତ ଜମି ଆମ ପାଖରେ ରହୁ । ଆମକୁ ମାରିନେଲେ ଯାଇ ଜମିଯିବ । ଏହି ଜମି, ଜଳ, ଜଙ୍ଗଲକୁ ତ ସରକାର ତିଆରି କରିନାହିଁ । ପ୍ରକୃତି ଦେଇଛି । ମହିଳା ମଧରୁ ଅଲାଡି ମାଝି କହିଲେ - ଆମେତ ନିୟମଗିରି କାଠ ପତ୍ରରୁ ଧନ୍ଦା ପାଇ ଚଳୁଛୁ । ଏଠି କମ୍ପାନୀ ଆସିଲେ ଆମ ପାହାଡ ପର୍ବତ ନଦୀ ଚାଲିଯିବ । ଆର୍ସିଂ ମାଝି କହିଲେ ଏ ଅଞ୍ଚଳର ପାଣି ବିଷ ହୋଇଯିବ । ନାଲିମାଟି (ରେଡ୍‌ମେଡ୍) ଓ



ଧଳା ଜଳଭଣ୍ଡାର (ଏସପଣ୍ଡ) ପରି ଯେଉଁ ଗାଁ ଲୋକେ ବିସ୍ଥାପିତ ହୋଇନଥିବ ସେମାନେ ଗାଁ ଜମି ଛାଡି ଚାଲିଯିବାକୁ ବାଧ ହେବେ । ବର୍ତ୍ତମାନ ପ୍ରଧାନମନ୍ତ୍ରୀ ସଡକ ଯୋଜନା ରାସ୍ତା ହେଉଥିବା ବେଳେ ଟ୍ରାକ୍ଟର ମେସିନ ଲଗାଇ ମାଟି କାମ କରୁଥିବା ବେଳେ ଆମେ ବେକାର ବସିଛୁ । ଏକଥା କେହି ବୁଝିବାକୁ ନାହିଁ । କାରଖାନାରେ ଆମ ସ୍ଥାନ କେଉଁଠି ? ଏସବୁ ପ୍ରତିକ୍ରିୟା ଲୋକଙ୍କ ମୁହଁରୁ ଶୁଣିବା ପରେ ସେମାନଙ୍କୁ କମ୍ପାନୀ ବିପକ୍ଷରେ କିମ୍ବା ସପକ୍ଷରେ ବୁଝାଇବ କିଏ ?

ସରକାରଙ୍କ ଜମି ଅଧିଗ୍ରହଣ ଅଧିକାରୀ ଜିଲ୍ଲାପାଳ ଆଲୁମିନା ପ୍ଲାଣ୍ଟଠାରୁ ନିୟମଗିରି ରତ୍ନ ଭଣ୍ଡାର ଆଦିବାସୀ ସମାଜର ଜୀବନ ଓ ଜୀବିକା ପାଇଁ ମୂଲ୍ୟବାନ କି ନାହିଁ ଯଦି ଦଇସିଂ ଦ୍ୱାରା ଜ୍ଞାନ ପାଇନଥିବେ ଆମେ କେହି ଅଧିକା ବୁଝାଇ ପାରିବା ନାହିଁ । କିନ୍ତୁ ଆଇନର ରକ୍ଷକମାନେ ଜାଣିବା ଉଚିତ ଯେ ସମ୍ବିଧାନର ୫ମ ଅନୁଚ୍ଛେଦ ଅନୁଯାୟୀ ଆଦିବାସୀ ଅଞ୍ଚଳର ଜମି ଅଣ ଆଦିବାସୀଙ୍କୁ ସରକାର ଦେଇପାରିବେ ନାହିଁ । ବ୍ୟକ୍ତିଗତ ଘର, ଜମି ବାହାରେ , ଜଳ, ଜମି, ଜଙ୍ଗଲ, ଖଣି ଉପରେ ସେ ଅଞ୍ଚଳ ଆଦିବାସୀ ସମାଜର ଅଧିକାରକୁ ୧୯୯୭ରେ ସୁପ୍ରିମକୋର୍ଟ ଏକ ସାମ୍ବିଧାନିକ ଅଧିକାର ରୂପେ ଗ୍ରହଣ କରିଛନ୍ତି । ୧୯୯୬ର ଗ୍ରାମସଭା ଅଧିକାର ଅନୁଯାୟୀ ଆଦିବାସୀମାନେ ଜମି ଅଧିଗ୍ରଅହଣ ନୋଟିସକୁ ପ୍ରତ୍ୟାଖ୍ୟାନ କରିବା ଏକ ବିଧି ସମ୍ମତ । ଜିଲ୍ଲାପାଳ ସରକାରୀ କଳର ବ୍ୟବହାର କରି ଯେଉଁ ଗ୍ରାମସଭା କରିଥିଲେ ତାହା ଜନତାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ଥିଲା । ଏହାପରେବି ଯଦି ସରକାରଙ୍କ ପ୍ରତିନିଧି, ସାଂସଦ, ସ୍ଥାନୀୟ ବିଧାୟକ (ମନ୍ତ୍ରୀ) ଯଦି କମ୍ପାନୀର ପାଇଁ ଦରଦୀ ହେବେ କିମ୍ବା ବିକାଶର ସ୍ୱପ୍ନରେ କୁହୁଳି ଯାଇ ବାପୁଡା ଆଦିବାସୀଙ୍କୁ ସମୃଦ୍ଧିର ଭାଗିଦାରୀ କରିବା ନାମରେ କହିବେ "ଜମି ବଦଳରେ ଟଙ୍କା ପାଇଁ ଗାମୁଛା ବଦଳରେ ସାର୍ଟ ପିନ୍ଧି ମଟର ସାଇକେଲ ଚଢ଼ି ଆଉ ଟିଭି ଦେଖ" । ତା ପରେ ଆଦିବାସୀ ସର୍ବସ୍ୱାନ୍ତ ହୋଇ କେତଟା ଦିନ ଭିତରେ ସେସବୁ ବିକି ଦେଇ ଭିକ ମାଗିବ କିମ୍ବା ସହରର ଆର୍ବଜନା ବସ୍ତିର ଶରଣାର୍ଥୀ ହେବ କିମ୍ବା ନୂଆ କାରଖାନାରୁ ଜାତ ନୂଆ ସହରୀ ବାବୁଙ୍କ ଘରମାନଙ୍କରେ ଚାକର ହେବାପାଇଁ ଧାଡି ବାନ୍ଧିବ । ଏପରି ଏକ ସ୍ଥିତିକୁ ନେବା ପାଇଁ ଉଦ୍ୟକ୍ତା ମାନେ ଜାଣିଶୁଣି ବିଶ୍ୱାସଘାତକତା କରୁଛନ୍ତି ।

ଲୋକଙ୍କ ପ୍ରତିବାଦର ସ୍ୱର ସବୁଠି ପ୍ରତିଧ୍ୱନିତ ହେବ । ଓଡ଼ିଶାବାସୀ ତଥା ଦେଶବାସୀଙ୍କ ମୌଳିକ ଆବଶ୍ୟକତା ସ୍ୱଚ୍ଛ ପାଣି, ପବନ ଓ ଖାଦ୍ୟ ପାଇଁ ଜୀବଜଗତର

ଏକ ପ୍ରାକୃତିକ ସନ୍ତୁଳନ ଅନିବାର୍ଯ୍ୟ । ଏହାର ବିଘଟନ ହେଲେ ପ୍ରାକୃତିକ ବିପର୍ଯ୍ୟୟ ସାଂଘାତିକ ଭାବରେ ସଂହାର କରିବ । ତେଣୁ କାଶୀପୁର କିମ୍ବା ଲାଞ୍ଜିଗଡର ଆଦିବାସୀ ଆନ୍ଦୋଳନ କେବଳ ସେମାନଙ୍କର ନୁହେଁ ବରଂ ଏହା ମଣିଷ ସମାଜର । କେତେ ପରିମାଣ ଆମେ ଆମ ଆବଶ୍ୟକତା ଅନୁଯାୟୀ ପ୍ରକୃତିଦତ୍ତ ସମ୍ବଳରୁ ସାରିବା ତାହା ଠିକ୍ ହୋଇଯିବା ଦରକାର । ନଚେତ ସଂପ୍ରତି ଖୋଲା ବଜାରରେ ସାମ୍ରାଜ୍ୟବାଦର ଖୁବ୍ ଶକ୍ତିଶାଳୀ ହତିଆର ଡଲାରଟି ଆମର ସବୁକିଛି ଲୁଟକରି ନେଇଯିବ । ସେହି ପ୍ରକ୍ରିୟା ହିଁ ଜଗତୀକରଣ - ବିକାଶ ନାମରେ ବିନାଶର ଖେଳ । ହାରଜିତ୍‌ର ପ୍ରଶ୍ନ ନାହିଁ ।

ପରିବେଶ ମନ୍ତ୍ରଣାଳୟ ମୁନାଫାଖୋରୀ ଖଳନାୟକଙ୍କ ହାତବାରିସୀ ହୋଇ ସାରିଲାଣି । ସତ୍ୟର ସମୀକ୍ଷା କରିବାକୁ ଅପ୍ରସ୍ତୁତ । ଏକାଥରକେ ଏକରୁ ଦୁଇ ତିନି.... ୧୦ ପର୍ଯ୍ୟନ୍ତ ଆଲୁମିନା କାରଖାନାର ପ୍ରଦୂଷଣ ଅତ୍ୟାଚାର ଓ ୧୦ଟି ବୃହତ୍ତର ପାହାଡ ଓ ଶତାଧିକ ନଦୀ ଝରଣା ଗୁଡିକର ହତ୍ୟାପରେ କି ଦୁର୍ଗତି ଅବ୍ୟସମ୍ଭାବୀ ତାର ହିସାବ ଏପର୍ଯ୍ୟନ୍ତ ହୋଇନାହିଁ । ନାଲକୋ ହାତରେ କୋରାପୁଟର ପଞ୍ଚପଟମାଳି ଅଛି । ବର୍ତ୍ତମାନର ଉତ୍ପାଦନ ହାର ଅନୁଯାୟୀ ପ୍ରାୟ ୧୦୦ ବର୍ଷରୁ ଉର୍ଦ୍ଧ୍ୱ ଏଠାରେ ଉତ୍ତୋଳନ ଚାଲିଛି । ତହା ଘରୋଇକରଣ ହୋଇଗଲେ ମାତ୍ର ୨୦/୨୫ ବର୍ଷରେ ଶେଷ ହୋଇଯିବ । ତେଣୁ ତାକୁ ସମ୍ପୂର୍ଣ୍ଣ ଭାବରେ ସରକାରଙ୍କ ମାଲିକାନାରେ ରଖି ପଞ୍ଚପଟମାଳିର ବକ୍ସାଇଟ୍ ଶେଷ ହେବାଯାଏ ଓଡ଼ିଶାର ଅନ୍ୟ କେଉଁଠି ମଧ ଉକ୍ତ ମୂଲ୍ୟବାନ ଖଣି ଖୋଲାନଯାଉ ଓ ବିଷାକ୍ତ ଶିଳ୍ପକୁ ଆଣି ଧ୍ୱଂସ କରାନଯାଉ । ଏହି ଦିଗରେ ଗନ୍ଧମାର୍ଦ୍ଦନ ପରେ କାଶୀପୁର ଓ ନିୟମଗିରି ଆନ୍ଦୋଳନ ଆମକୁ ବାଟ କଢ଼ାଉଛି । ଆହ୍ୱାନ - ମା ନିୟମଗିରିକୁ ହତ୍ୟାକର ନାହିଁ । ଏହାର ସୁରକ୍ଷା ପାଇଁ ଜଗତୀକରଣର ସମସ୍ତ ବିରୋଧୀ ରାଜନୈତିକ ଦଳ, ଜନ ସଂଗଠନ ଓ ବ୍ୟକ୍ତିମାନେ ସଂଗ୍ରାମରେ ସାଥ୍ ଦେବେ କି ?



# ଜଙ୍ଗଲ ଓ ଜୀବିକା

*କିଶୋର ସାମଲ*

ପଦାର୍ଥ ପୁଞ୍ଜି, ବିତ୍ତ ପୁଞ୍ଜି, ମାନବ ପୁଞ୍ଜି, ସାମାଜିକ ପୁଞ୍ଜି ବ୍ୟତୀତ ପ୍ରାକୃତିକ ପୁଞ୍ଜିର ଗୁରୁତ୍ୱ ଏବେ ଆମେମାନେ ଅନୁଭବ କରୁଛେ । ଏହା ସମସ୍ତ କୌଣସି ଦେଶର ଅର୍ଥନୈତିକ ପ୍ରଗତି ପାଇଁ ଆବଶ୍ୟକ । ଜଙ୍ଗଲ ଓ ପରିବେଶ ପ୍ରାକୃତିକ ପୁଞ୍ଜିର ମୁଖ୍ୟ ଉତ୍ସ । କିନ୍ତୁ ବହୁଦିନ ଧରି ଅର୍ଥଶାସ୍ତ୍ର ଏହାକୁ ପ୍ରକୃତିର ମୁକ୍ତଦାନ ବୋଲି ଭାବି ବିଚାରକୁ ଆସୁନଥିଲା । ଭାରତରେ ଇଂରେଜ ଶାସକମାନେ ଜଙ୍ଗଲକୁ ଯୁଦ୍ଧ ସାମଗ୍ରୀ ଓ ରେଲଲାଇନ୍‌ର ଗଠନ ପାଇଁ ବ୍ୟବହାର କରୁଥିଲେ । ଅନ୍ୟଦେଶମାନଙ୍କରେ ମଧ୍ୟ ଜଙ୍ଗଲକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ବ୍ୟବହାର କରାଯାଉଥିଲା । କିନ୍ତୁ ଜଙ୍ଗଲରେ ରହୁଥିବା ଅଧିବାସୀମାନଙ୍କର ନିରବିଚ୍ଛିନ୍ନ ଆନ୍ଦୋଳନ ଫଳରେ ଜଙ୍ଗଲ ସୁରକ୍ଷା ଉପରେ ୧୯୭୦ ଦଶକରୁ ସାରା ପୃଥିବୀରେ ଗୁରୁତ୍ୱ ଦିଆଯାଉଛି । ଭାରତରେ ୧୯୮୦-ଜଙ୍ଗଲ ସୁରକ୍ଷା ଉପରେ ଗୁରୁତ୍ୱ ଦିଆଯାଉଛି । କାରଣ ଆମେ ଜଙ୍ଗଲରୁ କାଠ, ଲଘୁବନଜାତ ଦ୍ରବ୍ୟ, ଜଳଚକ୍ର ଭଳି ବହୁତ ଉପକାର ପାଉଛୁ । କିନ୍ତୁ ଏହାସତ୍ତ୍ୱେ ଭାରତରେ ଓ ଓଡ଼ିଶାରେ ଦ୍ରୁତଗତିରେ ଜଙ୍ଗଲ କ୍ଷୟ ହେଉଛି । ଏହାର ମୂଳ କାରଣ ହେଲା:- (କ) କାଠକଟା, (ଖ) କୃଷିଜମିର ବିସ୍ତାର ଓ (ଗ) ବଡ଼ ବଡ଼ ପ୍ରକଳ୍ପ ।

## ଜଙ୍ଗଲ ନୀତି:

ରାଜା ଜଙ୍ଗଲରେ ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ କାର୍ଯ୍ୟ କରିବେ, ଏବଂ ଜଙ୍ଗଲକୁ ନଷ୍ଟ କରୁଥିବା ବ୍ୟକ୍ତି ଉପରେ ଜୋରିମାନା ବସାଇବେ ଓ ତାଙ୍କଠାରୁ କ୍ଷତିପୂରଣ ଆଣିବେ ବୋଲି କୌଟିଲ୍ୟ ତାଙ୍କ ଅର୍ଥ ଶାସ୍ତ୍ରରେ ଜଙ୍ଗଲ ବିଷୟରେ କେତେକ ଉପଦେଶ ଦେଇଛନ୍ତି । ୧୯୮୪ ଜଙ୍ଗଲ ନୀତି ଜଙ୍ଗଲକୁ ଚାରି ଭାଗରେ ବିଭକ୍ତ କରିଥିଲା । କେବଳ ଦୁଇପ୍ରକାର ଜଙ୍ଗଲ (ଯଥା:- ଲଘୁବନଜାତ ଦ୍ରବ୍ୟ, ଗୋଚର ଜମି) ସ୍ଥାନୀୟ ଆବଶ୍ୟକତାକୁ ବିଚାରକୁ ନେଇଥିଲା । କିନ୍ତୁ ଶାଗୁଆନ୍, ଶାଳ, ପାଇନ, ଦେବଦାରୁ ଭଳି ବ୍ୟବସାୟିକ କାଠ ଉପରେ ଇଂରେଜ ସରକାର ତାଙ୍କର କର୍ତ୍ତୃତ୍ୱ ବଜାୟ ରଖିଥିଲେ । ଏହାଦ୍ୱାରା ଏହିଭଳି ଜଙ୍ଗଲ ପାଖରେ ଥିବା ବାସିନ୍ଦାମାନଙ୍କର ଜଙ୍ଗଲରୁ ଜୀବିକା ଅର୍ଜନ କରିବାରେ ବ୍ୟାଘାତ ଆସିଲା । ଅବଶ୍ୟ ଗଡ଼ଜାତ ଅଞ୍ଚଳରେ ବିଭିନ୍ନ ରାଜ୍ୟରେ ଭିନ୍ନ ଭିନ୍ନ ନୀତି ଥିଲା ।



୧୯୫୨ ଜଙ୍ଗଲ ନୀତି ଜଙ୍ଗଲର ଚାରି ପ୍ରକାର କାର୍ଯ୍ୟାତ୍ମକ ଶ୍ରେଣୀ ବିଭାଗ କଲା ଏବଂ ସରକାରଙ୍କର ଏକଚାଟିଆ ଅଧିକାର ସାବ୍ୟସ୍ତକଲା । ଜାତୀୟ ସ୍ୱାର୍ଥ ପାଇଁ ଅର୍ଥାତ ପ୍ରତିରକ୍ଷା, ଗମନାଗମନ ଓ ଅତ୍ୟାବଶ୍ୟକ ଶିଳ୍ପ ପାଇଁ ଜଙ୍ଗଲରେ ରହୁଥିବା ଅଧିବାସୀମାନଙ୍କ ସ୍ୱାର୍ଥକୁ ବଳି ଦିଆଗଲା । ସବୁଠାରୁ ଅଧିକ ସରକାରୀ ରାଜସ୍ୱ ଜଙ୍ଗଲରୁ ସଂଗ୍ରହ କରିବା ପାଇଁ ଧାର୍ଯ୍ୟ କରାଗଲା । ୧୯୭୬ରେ କୃଷି ଉପରେ ଜାତୀୟ ଆୟୋଗ ଶିଳ୍ପ ପାଇଁ ଦରକାର କାଠ ଉତ୍ପାଦନ ଉପରେ ପ୍ରାଧାନ୍ୟ ଦେଲା, ଯାହା ପାଇଁ ପରିବେଶ ଓ ସାଧାରଣ ଜନତା ଉପରେ ଏହାର କୁ-ପ୍ରଭାବ ପଡିଲା । ୧୯୭୫ରେ ଆରମ୍ଭ ହୋଇଥିବା ସାମାଜିକ ବନୀକରଣ ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ଥିଲା: ଜାଳେଣି କାଠରେ ଅଭାବ ଦୂର କରିବା । ଏହାର ଦୁଇଟି ଅଂଶବିଶେଷ ହେଲା (୧) ଫାର୍ମ ଫରେଷ୍ଟ୍ରି, (୨) ଗ୍ରାମ୍ୟ ଜମିର ବନୀକରଣ । କିନ୍ତୁ ଏହି ଯୋଜନାରେ ଗ୍ରାମର ଲୋକମାନଙ୍କୁ ସାମିଲ କରାଗଲା ନାହିଁ । ଜାଳେଣି କାଠ ବଦଳରେ, କେତେକ ନିର୍ଦ୍ଦିଷ୍ଟ ଶିଳ୍ପ (କାଗଜକଳ) ପାଇଁ ଆବଶ୍ୟକ ୟୁକାଲିପଟାସ୍ ବୃକ୍ଷ ସାହାଯ୍ୟରେ ବନୀକରଣ କରାଗଲା । ଓଡ଼ିଶାରେ ଏହା ୧୯୮୩ ମସିହାରେ ଆରମ୍ଭ ହୋଇ ୧୯୯୫ ସୁଦ୍ଧା ପ୍ରାୟ ୧୩ଟି ଅବିଭକ୍ତ ଜିଲ୍ଲାରେ କାର୍ଯ୍ୟକାରୀ ହୋଇଗଲା । ୧୯୮୮ ଜଙ୍ଗଲନୀତି ପରିବେଶ ସୁରକ୍ଷା ଉପରେ ପ୍ରାଧାନ୍ୟ ଦେଲା । ଏହି ନୀତି ବ୍ୟବସାୟିକ ଭିତ୍ତିରେ ଜଙ୍ଗଲକୁ ବଞ୍ଚିବା ପାଇଁ ବ୍ୟବସ୍ଥା କରିବା ଉପରେ ଗୁରୁତ୍ୱ ଦେଲା । "ମନୋକଲଚର୍‌କୁ" ଉତ୍ସାହ ଦିଆଗଲା ନାହିଁ ।

କେନ୍ଦ୍ର ସରକାରଙ୍କର ୧୯୯୦ରେ ଯୁଗ୍ମ ଜଙ୍ଗଲ ପରିଚାଳନା ପ୍ରସ୍ତାବ, ଜଙ୍ଗଲର ପରିଚାଳନାରେ ସ୍ଥାନୀୟ ଲୋକଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ବ୍ୟବସ୍ଥା କରିଛି । ଯେଉଁ ସ୍ଥାନୀୟ ଲୋକମାନେ ଜଙ୍ଗଲର ସୁରକ୍ଷା ଦାୟିତ୍ୱରେ ରହିବେ, ସେମାନେ ଲଘୁବନଜାତ ଦ୍ରବ୍ୟ ପାଇବେ ଓ ଆୟର କିଛି ଭାଗ ମଧ୍ୟ ନେବେ । ୨୦୦୦ ମସିହାର ନୂତନ ଧାରା ମହିଳାମାନଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ବ୍ୟବସ୍ଥା କଲା । ଓଡ଼ିଶାରେ ୯୦୫.୫ଟି ଗ୍ରାମ୍ୟ ଜଙ୍ଗଲ ସୁରକ୍ଷା କମିଟି ଅଛି । ଜଙ୍ଗଲ ସୁରକ୍ଷା କମିଟି ଗଠନରେ ବହୁତ ଭୁଲଭଟକା ରହିଯାଇଛି । ଲୋକମାନଙ୍କ ସହ କଥାବାର୍ତ୍ତା ନକରି କମିଟି ଗଠନ ହୋଇଥିଲା । ଗାଁର ସ୍ୱାର୍ଥକୁ ବିଚାରକୁ ନିଆଗଲା ନାହିଁ । ଜଙ୍ଗଲ ସୁରକ୍ଷା କମିଟି ଓ ଗ୍ରାମ ପଞ୍ଚାୟତ ମଧ୍ୟରେ ସମ୍ପର୍କ ବହୁତ କ୍ଷୀଣ । ଜଙ୍ଗଲ ବାସୀନ୍ଦାଙ୍କ ଜୀବିକା ସହ ଅଣକାଠ ବନଜାତ ଦ୍ରବ୍ୟ ଓତଃପ୍ରୋତ ଭାବେ ଜଡ଼ିତ । ହାରାହାରି ଗୋଟିଏ ହେକ୍ଟର ଜଙ୍ଗଲରେ ୨୫୦୦ଟଙ୍କା ଅଣକାଠ ବନଜାତ ଦ୍ରବ୍ୟ ମିଳିପାରିବ । ଓଡ଼ିଶାରେ କେନ୍ଦୁପତ୍ର, ଶାଳମଞ୍ଜି ଓ ବାଉଁଶ ଭଳି ଅଣକାଠ ବନଜାତ ଦ୍ରବ୍ୟକୁ ଜାତୀୟକରଣ କରାଯାଇଛି । ଅର୍ଥାତ୍ ଏହି ଦ୍ରବ୍ୟଗୁଡିକୁ



କେବଳ ଓଡ଼ିଶା ଜଙ୍ଗଲ ବିକାଶ ନିଗମ ଓ ଆଦିବାସୀ ବିକାଶ ସମବାୟ ନିଗମ ଭଳି ସରକାରୀ ସଂସ୍ଥାକୁ ବିକ୍ରି କରିହେବ । କିନ୍ତୁ ଏହି ସଂସ୍ଥାଦ୍ୱୟ ସରକାରଙ୍କ ପାଇଁ ରାଜସ୍ୱ ବୃଦ୍ଧି କରିପାରିନାହିଁ । ଅନ୍ୟ ପକ୍ଷରେ ପ୍ରାଥମିକ ସଂଗ୍ରାହକମାନେ ଉଚିତ ଦାମ ପାଉନାହାଁନ୍ତି । ଅନ୍ୟ ପକ୍ଷରେ ପ୍ରାଥମିକ ସଂସ୍ଥାକୁ ମଧ୍ୟ ଲିଜ୍ ଦିଆଯାଉଛି । ୧୯୯୦ରେ ୨୯ଟି ଅଣକାଠ ବନଜାତ ଦ୍ରବ୍ୟକୁ ଲିଜ୍ ଦିଆଯାଇଥିଲା । ଭାରତ ସରକାର ୨୦୦୦ ମସିହାରେ ଏକ ନିୟମ ଅନୁଯାୟୀ କେତେକ ଅଣକାଠ ବନଜାତ ଦ୍ରବ୍ୟ ଉପରେ ଗ୍ରାମ ପଞ୍ଚାୟତର ମାଲିକାନା ସାବ୍ୟସ୍ତ କରିଛନ୍ତି । ଓଡ଼ିଶା ସରକାର ୨୬ଟି ଦ୍ରବ୍ୟ ଉପରେ ଗ୍ରାମ ପଞ୍ଚାୟତର ଅଧିକାର ସାବ୍ୟସ୍ତ କରିଛନ୍ତି ସତ କିନ୍ତୁ ଏହା ମଧ୍ୟରୁ ମାତ୍ର ୧୦ରୁ ୧୨ଟି ଦ୍ରବ୍ୟ ଉପରେ ବ୍ୟବସାୟ ହୁଏ ।

ଅନ୍ୟ ଏକ ନିଃସରଣ ହେଲା ଜଙ୍ଗଲ ଜମି । ପ୍ରାୟ ଅଧାଅଧି ଜଙ୍ଗଲ ଜମି, ରାଜସ୍ୱ ବିଭାଗ ହାତରେ ଅଛି । ଖଣି ଓ ଚାଷ ଆଳରେ ରାଜସ୍ୱ ବିଭାଗ ଜଙ୍ଗଲ ଜମିକୁ ଲିଜ୍ ଦେଉଛି । ଜଙ୍ଗଲ ଅବକ୍ଷୟର ଏହା ଏକ ମୁଖ୍ୟ କାରଣ । ଜଙ୍ଗଲ ଜମିର ଅନଧିକାର ଦଖଲ ଆଉ ଏକ ବଡ ସମସ୍ୟା । ଭାରତରେ ୧୨.୫ ଲକ୍ଷ ହେକ୍ଟର ଜଙ୍ଗଲ ଓ ତାହା ମଧ୍ୟରୁ ଓଡ଼ିଶାରେ ୭୫,୦୦୦ ହେକ୍ଟର ଜଙ୍ଗଲ ଜମି ଅନଧିକାର ଦଖଲରେ ରହିଛି । କେନ୍ଦ୍ର ସରକାରଙ୍କର ୨୦୦୨ରେ ଏକ ଆଦେଶ ଅନୁଯାୟୀ ଏହି ଜବର ଦଖଲକାରୀଙ୍କୁ ହଟାଇବାରେ ବ୍ୟବସ୍ଥା ହୋଇଛି । ଏଥିରେ ପ୍ରସ୍ତାବ ଅଛି - ୧୯୮୦ ପୂର୍ବର ଜବରଦଖଲକାରୀଙ୍କୁ ହଟାଯିବ ନାହିଁ । କିନ୍ତୁ ଏପରି ପାର୍ଥକ୍ୟ ନଆଣି, (କ) ଜୀବିକା ପାଇଁ ଅନଧିକାର ଦଖଲ ଓ (ଖ) ବ୍ୟବସାୟ ପାଇଁ ଅନଧିକାର ଦଖଲ ମଧ୍ୟରେ ପାର୍ଥକ୍ୟ ଆଣି, ପ୍ରଥମ ଗୋଷ୍ଠୀକୁ ବେଦଖଲ ନ କରି ଦ୍ୱିତୀୟ ଗୋଷ୍ଠୀକୁ ବେଦଖଲ କରିବା ଯଥାର୍ଥ ।

## ଓଡ଼ିଶା ଓ ଏହାର ଜଙ୍ଗଲ:

ଓଡ଼ିଶା ସରକାରଙ୍କ ହିସାବ ଅନୁଯାୟୀ ୨୦୦୦-୦୧ରେ ୫୮,୧୩୫ଏକର (ସମଗ୍ର ଭୌଗୋଳିକ ଅଞ୍ଚଳରେ ୩୭.୩୦ ପ୍ରତିଶତ) ଜଙ୍ଗଲ କିନ୍ତୁ State of Forest Report-1999 ଅନୁଯାୟୀ ୪୭,୦୨୩ ଏକର (୩୦.୨୦%) ଜଙ୍ଗଲ । ଅବଶ୍ୟ ଜାତୀୟ ସ୍ତରରେ ୧୯.୪୦ ପ୍ରତିଶତ ଜଙ୍ଗଲ । ଜାତୀୟ ଜଙ୍ଗଲ ନୀତି (୧୯୮୮) ଅନୁଯାୟୀ ୩୩ ପ୍ରତିଶତ ଭୌଗୋଳିକ ଅଞ୍ଚଳ ଜଙ୍ଗଲ ରହିବା କଥା, ୬୦ ପ୍ରତିଶତ ପାହାଡିଆ ଅଞ୍ଚଳରେ ଓ ୨୦ ପ୍ରତିଶତ ସମତଳ ଅଞ୍ଚଳରେ । ଓଡ଼ିଶା ସରକାରଙ୍କର ଜଙ୍ଗଲରୁ ଆୟ ୮୭.୫କୋଟି ଟଙ୍କା ଓ ତାହା ମଧ୍ୟରୁ କେନ୍ଦୁପତ୍ରରୁ



୫୫କୋଟି ଟଙ୍କା ଆୟ ହୁଏ । କାଠଗତ ଓ ଜାଳେଣି କାଠରୁ ୧୪କୋଟି ଟଙ୍କା ଏବଂ ବାଉଁଶରୁ ମାତ୍ର ୫କୋଟି ଟଙ୍କା ଆୟ ହୁଏ ।

ଓଡ଼ିଶାରେ ଜଙ୍ଗଲର କ୍ଷୟହାର ସର୍ବଭାରତୀୟସ୍ତରଠାରୁ ଅଧିକ । ଓଡ଼ିଶା ସରକାରଙ୍କ ଅନୁସାରେ ଜଙ୍ଗଲ ଅବକ୍ଷୟର କାରଣ ହେଲା: - (୧) ଜନସଂଖ୍ୟା ବୃଦ୍ଧି, (୨) ଜାଳେଣୀକାଠର ଅଧିକ ଆବଶ୍ୟକତା, (୩) ଗୋଖାଦ୍ୟର ଅଧିକ ଆବଶ୍ୟକତା, (୪) କାଠ, (୫) ବର୍ଦ୍ଧିତ ସହରୀକରଣ ଓ ଶିଳ୍ପୀକରଣ । ଏଠାରେ ସୂଚାଇ ଦିଆଯାଇପାରେ ଯେ, ଜଙ୍ଗଲ ଅଞ୍ଚଳ, ଅଣଜଙ୍ଗଲ ବ୍ୟବହାର ପାଇଁ ବୃଦ୍ଧି ପାଉଛି । ଯଥା ୧୯୮୨-୯୧ ଦଶକରେ ୮୭ଟି ପ୍ରକଳ୍ପ ପାଇଁ ୯୮୦୦ ଏକର ଜଙ୍ଗଲର ନଷ୍ଟ ହୋଇଥିଲାବେଳେ, ୧୯୯୨-୨୦୦୦ ସମୟରେ ୧୩୦ଟି ପ୍ରକଳ୍ପ ପାଇଁ ୧୫,୫୪୩ ଏକର ଜଙ୍ଗଲକୁ ଅଣଜଙ୍ଗଲ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଛି ।

## ବିକଳ୍ପ ନୀତି:

ଓଡ଼ିଶାରେ ଜଙ୍ଗଲର କ୍ଷୟହାର ସର୍ବଭାରତୀୟ ସ୍ତରଠାରୁ ଅଧିକ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା, ଜାଳେଣିକାଠ ଓ ଗୋଖାଦ୍ୟର ଅଧିକ ଆବଶ୍ୟକତା, ବର୍ଦ୍ଧିତ ସହରୀକରଣ ଓ ଶିଳ୍ପୀକରଣ, ପୋଡୁଚାଷ ଇତ୍ୟାଦି ଜଙ୍ଗଲ ଅବକ୍ଷୟର ପ୍ରମୁଖ କାରଣ ବୋଲି ଓଡ଼ିଶା ସରକାର ଦର୍ଶାଇଛନ୍ତି । କିନ୍ତୁ ଦୁଇଟି ମୁଖ୍ୟ କାରଣ ହେଲା (କ) ଚୋରା ବ୍ୟବସାୟୀମାନଙ୍କର ଲୁଟ, (କ) ଜଙ୍ଗଲର ଉନ୍ନତି ପାଇଁ ସରକାରଙ୍କର ବଜେଟରେ କମ୍ ଖର୍ଚ୍ଚ ଓ ଅଗ୍ରାଧିକାର ନାହିଁ । ଏଠାରେ ଜଙ୍ଗଲପାଇଁ କିଛି ବିକଳ୍ପ ନୀତି ଚିନ୍ତା କରାଯାଇପାରେ । ବ୍ୟବସାୟ କରି ଲାଭ କରିବା ଅପେକ୍ଷା ପରିବେଶ ସୁରକ୍ଷାକୁ ପ୍ରାଧାନ୍ୟ ଦିଆଯାଉ । ଯୁଗ୍ମ ଜଙ୍ଗଲ ପରିଚାଳନା ବଦଳରେ ଗ୍ରାମ ପଞ୍ଚାୟତକୁ ଜଙ୍ଗଲ ସୁରକ୍ଷା ବ୍ୟବସ୍ଥା ହସ୍ତାନ୍ତର କରାଯାଉ । ରାଜସ୍ୱ ବିଭାଗ ହାତରୁ ଜଙ୍ଗଲ ଜମିର ମାଲିକାନା କାଢ଼ି ଆଣି ଜଙ୍ଗଲ ବିଭାଗ ହାତରେ ଦିଆଯାଉ । ବନୀକରଣ ସମୟରେ ଶୀଘ୍ର ବଢ଼ିବା ବୃକ୍ଷ ପରିବର୍ତ୍ତେ ଫଳଫଳିବା ବୃକ୍ଷ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ । ଲଘୁ ବନଜାତ ଦ୍ରବ୍ୟ ଗୁଡିକୁ ବ୍ୟବହାର କରି କ୍ଷୁଦ୍ର ଓ କୁଟୀର ଶିଳ୍ପର ବିକାଶ, ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ କରିବା ପାଇଁ ବ୍ୟାଙ୍କର ଆର୍ଥିକ ସହାୟତାରେ ସ୍ୱୟଂ ସହାୟକ ଗୋଷ୍ଠୀ ଓ ଗୋଦାମ ବ୍ୟବସ୍ଥା ଓ ଅନ୍ୟାନ୍ୟ ପ୍ରସ୍ତାବ ରଖାଯାଇପାରେ ।



# ଅରଣ୍ୟ ଉପରେ ନିର୍ଭରଶୀଳ ଆମ ଉପକୂଳ ଅର୍ଥନୀତି

*ନଦୀୟାଚାନ୍ଦ କାନୁନ୍‌ଗୋ*

ଉପକୂଳ ଅର୍ଥନୀତି, ଉପକୂଳ ଅରଣ୍ୟ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ, ଏହାର ଦ୍ୱିରୁକ୍ତି ନାହିଁ । ଉପକୂଳ ସୃଷ୍ଟି କରିଛି ଚାରି ଶ୍ରେଣୀର ଜୈବ-ଭୌତିକ ଅଞ୍ଚଳ । ପ୍ରଥମରେ ଲୁଣୀ-ଜୁଆରୀଆ ସାମୁଦ୍ରିକ ଅଞ୍ଚଳ । ଯେଉଁଠାରେ ଲୁଣା ଜୈବପିଢ଼ୀ ବା ଏଣ୍ଡୋଆୟାଇନ-ଇକୋ ସିଷ୍ଟମ ଦେଖିବାକୁ ମିଳିଥାଏ । ଏହା ଉପକୂଳ ଜନବସତି କୁ ସମ୍ପୂର୍ଣ୍ଣ ପ୍ରଭାବିତ କରିଥାଏ । ଏବଂ ତାହାର ଅର୍ଥନୀତିକୁ ପିଢ଼ୀ, ପିଢ଼ୀ ଧରି ଗତିଶୀଳ କରିରଖିଥାଏ ! ଏଠାରେ ଶ୍ରେଣୀ ବିଭାଗ; ମଣିଷର ବୃତ୍ତି ଉପରେ ନିର୍ଭରଶୀଳ । ଏଠାରେ ଯେଉଁ ଜୈବ ପିଢ଼ୀ ଦେଖିବାକୁ ମିଳିଥାଏ; ସେମାନେ ପ୍ରାଣୀ ହୁଅନ୍ତୁ କିମ୍ବା ଉଦ୍ଭିଦ ହୁଅନ୍ତୁ, ସେମାନଙ୍କର ବଞ୍ଚିବାର ଅର୍ଥାତ ସେମାନଙ୍କର ଜୀବନ-ଧାରାର ସ୍ୱତନ୍ତ୍ରତା ରହିଥାଏ । ପ୍ରାଣୀ ଏବଂ ଉଭିଦ ଏଠାରେ ଉଭୟ ଉଭୟଙ୍କ ମଧ୍ୟରେ ସମନ୍ୱୟ ରକ୍ଷାକରି ଏକପ୍ରକାର ସାମୁଦ୍ରିକ ଲବଣ ଭୌତିକ ଜୈବ ପରମ୍ପରା ସୃଷ୍ଟି କରିଥାନ୍ତି । ଏହି ପରମ୍ପରାକୁ ଭିତ୍ତିକରି, ମଣିଷ ମାନଙ୍କ ମଧ୍ୟରେ, ଏଠାରେ ବୃତ୍ତିଗତ ଜୀବନ ସୃଷ୍ଟି ହୋଇଛି । ଯାହାକୁ ପରେ ଜାତି ବା ଶ୍ରେଣୀବୋଲି କୁହାଯାଇ ଅଛି । ଯେଉଁମାନେ ମାଛ ଉତ୍ପାଦନକୁ ବୃତ୍ତିକରି ବଞ୍ଚିରୁହନ୍ତି ସେମାନଙ୍କୁ "ମତ୍ସ୍ୟଜୀବୀ", ଯେଉଁମାନେ ଏହି ଲୁଣା ପଟୁମାଟିରୁ ଶସ୍ୟ ଉତ୍ପାଦନକୁ ବୃତ୍ତିଭାବେ ଗ୍ରହଣ କରିନେଇଛନ୍ତି ସେମାନଙ୍କୁ "କୃଷିଜୀବୀ", ଯେଉଁମାନେ ଏହି ଲୁଣା ଜଙ୍ଗଲରୁ କାଠ ଏବଂ ଅନ୍ୟାନ୍ୟ ଲୁଣା ଅରଣ୍ୟ ଲବ୍ଧ ଦ୍ରବ୍ୟ ବ୍ୟବସାୟ ଉପରେ ନିର୍ଭର କରି ବଞ୍ଚିରୁହନ୍ତି ସେମାନଙ୍କୁ "ଜୈବ ଜୀବିକା ନିର୍ବାହୀ" ଏବଂ ଯେଉଁମାନେ ହସ୍ତଶିଳ୍ପ ଉପରେ ଜୀବିକା ଅର୍ଜନ କରନ୍ତି ସେମାନଙ୍କୁ "ଶିଳ୍ପୀ" ବୋଲି କୁହାଯାଇଥାଏ । ଏଠାରେ ପ୍ରାୟ ୮୦ ପ୍ରତିଶତ ଅଧିବାସୀ ଜୈବ ଜୀବିକା ଉପରେ ନିର୍ଭର କରି ବଞ୍ଚି ରହନ୍ତି । ଏହି ଜୀବିକା ପ୍ରାକୃତିକ ଏବଂ ପ୍ରାକୃତିକତା ହିଁ ଏହି ଅଧିବାସୀ ମାନଙ୍କର ପ୍ରାଣବାୟୁ । ସେମାନଙ୍କର ଜୈବ ଜୀବିକାକୁ ପୁଷ୍ଟକ ଉପକୂଳ-ଜୈବ-ବ୍ୟବସ୍ଥା ବନାମ ଉପକୂଳ-ଜୈବ-ଅର୍ଥନୀତି ।

ଏଠାରେ କୁଟୀର ଶିଳ୍ପକୁ ପୁଷ୍ଟ କରୁଥିବା ପ୍ରଧାନ ଉଦ୍ଭିଦମାନଙ୍କ ମଧ୍ୟରେ ଆସୁଛନ୍ତି ୭୦ରୁ ୭୫ ପ୍ରକାର ଲୁଣା ଉଦ୍ଭିଦ । ସେମାନଙ୍କ ମଧ୍ୟରେ ପ୍ରଧାନ ହେଉଛି ହେନ୍ତାଳ



ଏକବୀଜ ଦଳ ଉଦ୍ଭିଦ ବା ଏକ-ବୀଜି ଅର୍ଥାତ ଏକ ମନୋକଟି-ଲିଡନ ଉଦ୍ଭିଦ, ଯାହା ଉପକୂଳବାସୀଙ୍କୁ ସୁହାଇଲା ପରି ଗୃହ ନିର୍ମାଣ ବସ୍ତୁ ଯୋଗାଇ ଦେଇଥାଏ । ଏଠାରେ ଏହି ଉଦ୍ଭିଦ ଉପରେ ଗବେଷଣା କରାନଯାଇ ଚୁଙ୍ଗୁଡି ଚାଷ ପାଇଁ ଏହି ବନକୁ ଧ୍ୱଂସ କରିଦଆଯାଉଛି । ଏହି ଉଦ୍ଭିଦ ଉପରେ ଉପକୂଳବାସୀ ଭିନ୍ନ ଅନ୍ୟ ସୁଧୀ ସମାଜର ଜ୍ଞାନ ସୀମିତ । ଉପକୂଳ ଅଞ୍ଚଳରେ ଯେତେ ଉଦ୍ଭିଦ ଅଛନ୍ତି ସେମାନଙ୍କ ମଧ୍ୟରେ ପ୍ରାଧାନ୍ୟ ଲାଭ କରିଥିବା ଉଦ୍ଭିଦ ହେଉଛନ୍ତି ଏକ ବୀଜି ଉଦ୍ଭିଦ । ଯେଉଁମାନେ ଉପକୂଳ ଅର୍ଥନୀତିକୁ ସୁଦୃଢ଼ କରନ୍ତି । ସେମାନଙ୍କ ମଧ୍ୟରେ ଆସୁଛନ୍ତି ହେନ୍ତାଳ, ଯାହାର ଅର୍ଥହେଲା ତାଳର ସହଯୋଗୀ, ତାଳ ଏବଂ ହେନ୍ତାଳକୁ ସହଜରେ ଉଈ କିମ୍ବା କ୍ଷୟକାରୀ କୀଟ ପତଙ୍ଗ ଅକ୍ଷାୟୁ କରିପାରନ୍ତି ନାହିଁ । ଏହା ସାଙ୍ଗକୁ ସେହି ଜୈବ ଜନିତ ଗୃହଟି ପିଢ଼ି ପିଢ଼ି ଧରି ଏଠାକାର ଅଧିବାସୀମାନଙ୍କୁ ଆଶ୍ରୟ ଯୋଗାଇ ଦେଇଥାଏ । ଏହା ବ୍ୟତିତ ଏଠାରେ ମିଳୁଥିବା ଏକ ବୀଜି ଉଦ୍ଭିଦ ମାନଙ୍କର ଅର୍ଥାତ ବାଉଁଶ, ତାଳ, ହେନ୍ତାଳ, ବେତ, ନଡ଼ିଆ, ଘାସ ଏବଂ ନାଳିଆ ଘାସ ମାନଙ୍କର ଏକ ଚମତ୍କାରୀତା ରହିଛି ଯାହାକୁ ଫ୍ଲାଏବ୍ଲ୍ ବା ନମ୍ରତା କୁହାଯାଏ । ପବନରେ ଏମାନେ ଦୋହଲନ୍ତିସିନା, କିନ୍ତୁ ପଡନ୍ତି ନାହିଁ । ଏଣୁ ବହୁ ଯୁଗରୁ ବସିବାର ଆସନ, ଗୃହ ଉପକରଣ ଏବଂ ଏବେ ଆଧୁନିକ ସୋଫାସେଟ ପ୍ରଭୃତି ବେତ ଦ୍ୱାରା ପ୍ରସ୍ତୁତ କରାଯାଇ ଆସୁଛି ।

ବାଉଁଶ ମଧ ମଣିଷର ଗୃହୀ ପରିଚୟ ସୃଷ୍ଟି ହେବା ଦିନଠାରୁ କାମରେ ଲାଗିଆସୁଛି । ଏବେ ବାଉଁଶରୁ ୧୦୦୦ ପ୍ରକାରରୁ ଉର୍ଦ୍ଧ୍ୱ ବସ୍ତୁ ତିଆରି ହୋଇ ପାରୁଛି । ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଏବେ ଲାଳଗ୍ରନ୍ଥୀ ଉଲ୍ଲସିତ ହେଉଛି ଆମ ବାଉଁଶ ଅରଣ୍ୟ ଉପରେ । ବିଶ୍ୱରେ ସବୁଠାରୁ ବୃହତ ବାଉଁଶ ଅରଣ୍ୟ ହେଉଛି ଭାରତବର୍ଷ ତଥା ଓଡ଼ିଶା ଜଳବାୟୁରେ ହୋଇଥାଏ । ଏବେ ବିଶ୍ୱ ବାଉଁଶ ଉତ୍ପାଦନରେ ଚିନ ପ୍ରଥମ ସ୍ଥାନ ଅଧିକାର କରିଥିବା ବେଳେ, ଭାରତ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । କିନ୍ତୁ ଏହାର ବାଣିଜ୍ୟ ଆମ ରାଷ୍ଟ୍ରରେ ଦ୍ରୁତଗତିରେ ହ୍ରାସ ପାଇବାରେ ଲାଗିଛି । ଏହା ଉପକୂଳ ବାସୀଙ୍କର ଦୁର୍ଭାଗ୍ୟ ।

ବାଉଁଶରୁ ଉତ୍କୃଷ୍ଟ କାଗଜ ମଣ୍ଡ ପ୍ରସ୍ତୁତ ହେଲାପରି ହେନ୍ତାଳରୁ ମଧ ଉତ୍କୃଷ୍ଟ କାଗଜମଣ୍ଡ ପ୍ରସ୍ତୁତ ହୋଇପାରିବ । ହେନ୍ତାଳ ବୃକ୍ଷରୁ ମଧ ବାଉଁଶ ଓ ବେତ ପରି ଆଧୁନିକ ସୋଫାସେଟ ପ୍ରସ୍ତୁତ ହୋଇପାରିବ । ପାକଳ ତାଳ ବୃକ୍ଷରୁ ମଧ ଦୁର୍ଲ୍ଲଭ ଗୃହ ଉପକରଣ, ସୋଫାସେଟ୍ ମଧ ପ୍ରସ୍ତୁତ କରାଯାଇପାରିବ । ଉପକୂଳ ଜଳବାୟୁ ଯେଉଁ ବୃକ୍ଷମାନଙ୍କୁ ଜନ୍ମ ଦେଇଛି ସେହି ବୃକ୍ଷ ଓ ଉଦ୍ଭିଦମାନଙ୍କୁ ପୁଞ୍ଜିକରି କୁଟୀର ଶିଳ୍ପ ସୃଷ୍ଟିକରି ପାରିଲେ

ଉପକୂଳ ଦାରୀଦ୍ରତା ସହଜରେ ଦୂର ହୋଇପାରିବ । ଉପକୂଳ ଉଦ୍ଭିଦ ମାନଙ୍କ ମଧ୍ୟରୁ ନାଲିଆ ଘାସ ଏକ ଘାସ, ଯେଉଁ ଘାସର ପ୍ରତିଦ୍ୱନ୍ଦ୍ୱୀ ନାହିଁ । ଏହି ଘାସରେ ଶୋଇବା ପଟିଆ, ଘର-ଛପର ଠାରୁ ଆରମ୍ଭକରି ବସ୍ତୁ ସାଇତିବା ପାତ୍ର ଯଥା ଟୋକେଇ, ଡାଲା, ବାଉଁଶିଆ ଗୌଣୀ ପ୍ରସ୍ତୁତ ହୋଇଥାଏ। ଲୁଣା ଅରଣ୍ୟ ଉପରେ ଉତ୍ପିଡନ ଏବେ ଆମ ୨୦୦ରୁ ୩୦୦ ବର୍ଗ କିଲୋମିଟର ହେନ୍ତାଳ ଅରଣ୍ୟକୁ ଧ୍ୱଂସ କରିଦେବାକୁ ବସିଲାଣି । କୌଣସି ଏକ ରାଜ୍ୟର ସମୃଦ୍ଧି; ସେହି ରାଜ୍ୟର ଜୈବ-ଭିତ୍ତିକ ହେଲେ ତାହା ସ୍ଥାୟୀ ହୁଏ, ଏବଂ ଜୀବ ଧର୍ମୀ ହୋଇ ରୁହେ । ଏଠାରେ ଜୀବଧର୍ମୀ କହିବା ଅର୍ଥ, ସେହି ନିର୍ଦ୍ଦିଷ୍ଟ ସ୍ଥାନର ଜଳବାୟୁ ସହିତ ସହଯୋଗ ରକ୍ଷାକରି, ଯେକୌଣସି ଜୀବ ଭିତ୍ତିକ ଶିଳ୍ପ ପ୍ରତିଷ୍ଠା କରାଗଲେ ତାହା ମାନବ ଧର୍ମୀ ବୋଲି ଧରାଯାଏ । ଏଠାରେ ଲୁଣା କିଆର ଉଦାହରଣ ଦିଆଯାଇପାରେ । ଏହି ୨୦୦ରୁ ୩୦୦ ବର୍ଗ କିଲୋମିଟରେ ଆମ ଉପକୂଳ ହେନ୍ତାଳ ଅରଣ୍ୟ ମଧ୍ୟରେ ପର୍ଯ୍ୟାପ୍ତ ପରିମାଣରେ ଲୁଣାକିଆ ଦେଖିବାକୁ ମିଳିଥାଏ । ଏଠାରେ ହେନ୍ତାଳ ଅରଣ୍ୟ କହିବା ଅର୍ଥ ସମୁଦାୟ ଉପକୂଳ ଅରଣ୍ୟକୁ ହିଁ ବୁଝାଏ; କାରଣ ଯେଉଁଠାରେ ହେନ୍ତାଳ ବୃକ୍ଷ ସାଧାରଣ ଲୁଣି ଉଦ୍ଭିଦମାନଙ୍କ ଅପେକ୍ଷା ଅଧିକ ସଂଖ୍ୟାରେ ଦେଖିବାକୁ ମିଳେ ସେହି ଅରଣ୍ୟକୁ ସୁନ୍ଦରୀ ଅରଣ୍ୟ ବା ସୁନ୍ଦରବନ କିମ୍ବା ଅନ୍ୟ କ୍ଷେତ୍ରରେ ଲୁଣା କିଆ ଅରଣ୍ୟ କୁହାଯାଇଥାଏ । କିଆ ଫୁଲରୁ ଅତ୍ୟନ୍ତ ଉପାଦେୟ ସୁବାସିତ ତେଲ ମିଳିଥାଏ, ଯାହାର ଚାହିଦା ଆନ୍ତର୍ଜାତିକ ବଜାରରେ ରହିଅଛି । ଏବଂ ଆନ୍ତର୍ଜାତିକ ବଜାରରେ ଯାହାର ବ୍ୟବସାୟିକ ନାମ "କେଓରା ଅଏଲ" ବା କେଓରା ତେଲ ବୋଲି ରଖାଯାଇଅଛି । କିଆ ଫୁଲର ପାଖୁଡାରୁ ଏହି ତେଲ ପ୍ରସ୍ତୁତ କରାଯାଇଥାଏ । ଏହି ତେଲରୁ କେଓରା ବା କେଓଡା ଅତର ପ୍ରସ୍ତୁତ କରାଯାଇଥାଏ । ଏହି ଅତରରୁ ମଧ୍ୟ ଧୂପ ସାମଗ୍ରୀ ଏବଂ କେଶ ତୈଳ ପ୍ରସ୍ତୁତ ହୋଇଥାଏ । ଏହି ଅତର ଭାରତବର୍ଷରୁ ପ୍ରତିବର୍ଷ ଖୁବ୍ କମ୍ ପରିମାଣରେ ବାହାର ରାଷ୍ଟ୍ରକୁ ରପ୍ତାନି ହୋଇଥାଏ । ଆମ ପ୍ରଦେଶ ତଥା ଆମ ରାଷ୍ଟ୍ରରେ ଏହି ଲୁଣା କିଆର ପର୍ଯ୍ୟାପ୍ତ କ୍ଷେତ୍ର ଏବଂ ଜଳବାୟୁ ରହିଥିଲେ ମଧ୍ୟ, ଏହାର ତେଲ ଉତ୍ପାଦନ ଅତ୍ୟନ୍ତ ନୈରାଶ୍ୟ ଜନକ ।

ଉପକୂଳର ପ୍ରାକୃତିକ ସମ୍ପଦକୁ ଉପେକ୍ଷା କରାଯାଇ ଏବେ ସମୁଦାୟ ଉପକୂଳ ଅରଣ୍ୟକୁ ଚୁଙ୍ଗୁଡିଚାଷ ଗ୍ରାସ କଲାଣି । ଆମେ ଜାଣିରଖିବା ଉଚିତ ଆମେ ଉପକୂଳ ଅରଣ୍ୟକୁ ଉପେକ୍ଷାକଲେ ଏବଂ ପ୍ରାକୃତିକ ଲୁଣା ଅରଣ୍ୟ ସମ୍ପଦକୁ ଧ୍ୱଂସ କରିଦେଲେ ଚୁଙ୍ଗୁଡିମାନଙ୍କର ପ୍ରାକୃତିକ ଭୌତିକ ପ୍ରକ୍ରିୟାରେ ସୃଷ୍ଟି ହେଉଥିବା ଖାଦ୍ୟ ଆଉ ସୃଷ୍ଟି ହୋଇପାରିବ ନାହିଁ । କୃତ୍ରିମ ଖାଦ୍ୟ ଉପରେ ଏହି ପ୍ରାଣୀମାନଙ୍କୁ ବର୍ଷ ବର୍ଷ ଧରି ଚାଷ

କରାଗଲେ ଏହି ଅଞ୍ଚଳର ପ୍ରାକୃତିକତା ଲୋପପାଇଯିବ ଏବଂ ଏଠାକାର ଜୀବ ବିବିଧତା ସମ୍ପୂର୍ଣ୍ଣ ଲୋପ ପାଇଯିବ । ଏଣୁ ଉପକୂଳ ଅର୍ଥନୀତିକୁ ସୁଦୃଢ଼ କରିବାକୁ ହେଲେ ଉପକୂଳ ଜୀବ ଭିତ୍ତିକ ଶିଳ୍ପାନୁଷ୍ଠାନ ସୃଷ୍ଟି କରାଗଲେ ଉପକୂଳବାସୀ ସୁସ୍ଥ ଅର୍ଥନୈତିକ ପ୍ରଗତିଲାଭ କରିପାରିବେ । ଯେଉଁଥିପାଇଁ ଏଠାରେ ପର୍ଯ୍ୟାପ୍ତକ୍ଷେତ୍ର ରହିଛି ।

ଏହି ଅଞ୍ଚଳରେ ମିଳୁଥିବା କେତେ ବୃକ୍ଷମାନଙ୍କର ବାଣିଜ୍ୟକ ଦକ୍ଷତା ଏବଂ ଅର୍ଥନୈତିକ କ୍ଷମତା ଏଠାରେ ଦର୍ଶାଯାଇପାରେ । ଏହି ସବୁ ବୃକ୍ଷମାନଙ୍କ ମଧ୍ୟରେ ଆସୁଛନ୍ତି, ସୁନ୍ଦରୀ, ଗୁଆଁ, କେରୁଆଁ, ଗରାଣି, ଶିଶୁମାର, ବନି, ବନ୍ଦରି, ପିତାମାରୀ, ସିଙ୍ଗଡା, ହେନ୍ତାଳ ଇତ୍ୟାଦି । ଯେଉଁ ବୃକ୍ଷମାନଙ୍କରୁ ପ୍ରଧାନତ ଉପକୂଳବାସୀଙ୍କୁ ପ୍ରତ୍ୟେକ୍ଷ ଲାଭ ମିଳିଥାଏ ଏବଂ ପ୍ରଦେଶ ଓ ରାଷ୍ଟ୍ରପାଇଁ ଅର୍ଥ ଉପାର୍ଜନ ହୋଇପାରିବ, ସେହି ପ୍ରକାର ବୃକ୍ଷମାନଙ୍କୁ ନେଇ ଶିଳ୍ପ ସୃଷ୍ଟି କରିପାରିଲେ ସେହି ସବୁ ଶିଳ୍ପ ପ୍ରକୃତି ଭିତ୍ତିକ ହୋଇପାରିବ ଏବଂ ଅର୍ଥ ଉପାର୍ଜନରେ ରାଷ୍ଟ୍ର ଏବଂ ପ୍ରଦେଶକୁ ସୁନାମ ଆଣିଦେବା ସହିତ ପ୍ରଦେଶକୁ ପ୍ରାକୃତିକ ଦୁର୍ବିପାକରୁ ମୁକ୍ତ ରଖିବ । ଉପରେ ବର୍ଣ୍ଣନା କରାଯାଇଥିବା ବୃକ୍ଷମାନେ ଉପକୂଳବାସୀଙ୍କୁ ଜାଳେଣିକାଠ, ଗୃହନିର୍ମାଣ କାଠ, ଇଲେକ୍‌ଟ୍ରିକ୍ ଖମ୍ବ, ଗୃହର ଓରାବନ୍ଧା, ଡଙ୍ଗା, ଲଞ୍ଚ, ନଦୀମାନଙ୍କୁ ମୃତ୍ତିକା କ୍ଷୟ ଏବଂ ଭୌତିକ ଶୃଙ୍ଖଳାରକ୍ଷା କିରବାକୁ ନିର୍ମାଣ କରାଯାଇଥିବା ବନ୍ଧାବାଡ, ଗୃହ ଛପରର ଆବଶ୍ୟକୀୟ ଦ୍ରବ୍ୟ ଇତ୍ୟାଦି ଯୋଗାଇଥାଏ ।

ମାଛ ଶୀକାର ପାଇଁ ଏଠାରୁ ମିଳିଥାଏ ଯନ୍ତା କାଠ ଏବଂ ଚମଡା କଷାଇ ବା ଜୈବିକ ରସ । ଗୋଖାଦ୍ୟ, ଚାଷପାଇଁ ସବୁଜସାର, କାଗଜ ଶିଳ୍ପ ପାଇଁ ଆବଶ୍ୟକୀୟ କାଗଜ କାଠ ମଣ୍ଡ, ବାକ୍ସ ପ୍ରସ୍ତୁତ କାଠ, ବା 'ହାର୍ଡ୍-ଉଡ୍', ଦିଆସିଲି ପ୍ରସ୍ତୁତ କାଠ, ପେନସିଲ୍ ପ୍ରସ୍ତୁତ କାଠ ଇତ୍ୟାଦି ମଧ୍ୟ ମିଳିଥାଏ ।

ଖାଦ୍ୟ ଦ୍ରବ୍ୟ ମଧ୍ୟରେ ଆସୁଛି, ଭିନ୍ନ ଭିନ୍ନ ଫଳ, ପତ୍ର (ଶାଗ) ଏବଂ ଉଦ୍ଭିଦ ଅଙ୍ଗ । ଔଷଧ ପାଇଁ ଗଛର ଛେଲି, ମୂଳ, ପତ୍ର ଏବଂ ଫଳ ଯୋଗାଇ ଦେଇଥାଏ ମଣିଷର ଭିନ୍ନ ଭିନ୍ନ ରୋଗ ପାଇଁ ଜୈବିକ ଔଷଧ, ଯାହାର ପ୍ରତିଦ୍ୱନ୍ଦୀ ନାହିଁ । ଗୃହ ଉପକରଣ, ଗୃହ ଫର୍ଣ୍ଣିଚର, ଯନ୍ତ୍ରପାତିର ବେଣ୍ଟ, ପଟିଆ ଟୋକେଇ ଇତ୍ୟାଦି । ଏହାଛଡା ଦ୍ରବ୍ୟ ରପ୍ତାନି ପାଇଁ ଆବଶ୍ୟକୀୟ ବାକ୍ସ ପାଇଁ କାଠ । ମହୁ:- ଲୁଣା ଅରଣ୍ୟରୁ ଉତ୍କୃଷ୍ଟ ଦୁର୍ଲଭ ମଧୁ ମିଳିଥାଏ ଯାହାର ପ୍ରତିଦ୍ୱନ୍ଦୀ ନାହିଁ । ଲୁଣା ଅରଣ୍ୟର ଏପ୍ରକାର ଅବଦାନକୁ ଆମେ କଣ ଚିଙ୍ଗୁଡିଚାଷ ପାଖରେ ବଳିଦେଇଦେବା ? କେତେକ ନିର୍ଦ୍ଦିଷ୍ଟ ବ୍ୟକ୍ତି ବିଶେଷଙ୍କ ସ୍ୱାର୍ଥରକ୍ଷା କରିବାକୁ ଯାଇ ଏହା ଉପରେ ବିତର୍କ ଆବଶ୍ୟକ ।



ଏହା ବ୍ୟତୀତ ଲବଣ ଜଳଭୌତିକ ପ୍ରାକୃତିକ ବ୍ୟବସ୍ଥା ଆମ୍ଭମାନଙ୍କୁ ଯୋଗାଇଥାଏ ବହୁପ୍ରକାରର ମାଛ, ଯାହା ଉତ୍କୃଷ୍ଟ ଖାଦ୍ୟ ଉପଯୋଗୀ, ଔଷଧୀୟ ତୈଳ, ଜୈବିକ ସାର ଏବଂ କଠିନ ଖୋଳପାଯୁକ୍ତ ପ୍ରାଣୀମାନଙ୍କ ମଧ୍ୟରୁ ଚିଙ୍ଗୁଡ଼ି, କଙ୍କଡ଼ା ଇତ୍ୟାଦି । ଏହା ଛଡ଼ା ଏହି ଜୈବ-ଭୌତିକ ସୃଷ୍ଟି କରିଛି କୋଟି କୋଟି ସଂଖ୍ୟାରେ ମହୁମାଛି, ସରିସୃପ, ଗେଣ୍ଡା, ଶାମୁକା, ପକ୍ଷୀ, ସ୍ତନ୍ୟପାୟୀ ପକ୍ଷୀ ଇତ୍ୟାଦି । ଯାହା ଅନ୍ୟ କ୍ଷେତ୍ରରେ କଳ୍ପନା କରାଯାଇନପାରେ ।

ଲୁଣା ଉଦ୍ଭିଦ ଜଗତର ଏକ ଶୃଙ୍ଖଳିତ ଜୀବନ ଏଠାରେ ଦେଖିବାକୁ ମିଳିଥାଏ, ଯାହା ପାଠକମାନେ ଶୁଣିଲେ ଆଶ୍ଚର୍ଯ୍ୟ ବୋଧ କରିବେ । ଏହାର ଏକ ଉଦାହରଣ ଲେଖକ ଏଠାରେ ଦେବାକୁ ଉଚିତ ମନେକରୁଛି ।

### ନଦୀକୂଳର ଏକ ଜୈବ-ଯୋଜନା

| | ମଧୁରପାଣି | ମଧୁର ଏବଂ ଲୁଣି ପାଣିର ସଂଯୋଗ | ସମ୍ପୂର୍ଣ୍ଣ ଲୁଣିପାଣି |
|---|---|---|---|
| ପ୍ରଥମ ପର୍ଯ୍ୟାୟ | ଘାସ ପଠା | ଘାସ+କେରୁଆଁମାଳ | ଗୁଆଁମାଳ |
| ଦ୍ୱିତୀୟ ପର୍ଯ୍ୟାୟ | ବଣି ବୃକ୍ଷମାଳ | ଗୁଆଁମାଳ | ଗୁଆଁ+ସୁନ୍ଦରୀ + ବନ୍ଦରୀବନ |
| ତୃତୀୟ ପର୍ଯ୍ୟାୟ | ଗୁଆଁ ବୃକ୍ଷମାଳ ଏବଂ ଅନ୍ୟ ସାଥୀ ଉଦ୍ଭିଦ | ଗୁଆଁ+ପିତାମାରୀ+ ଗିରାଣି ବୃକ୍ଷମାଳ | ସୁନ୍ଦରୀ+ଗୁଆଁବନ |
| ଚତୁର୍ଥ ପର୍ଯ୍ୟାୟ | ସୁନ୍ଦରୀ ବୃକ୍ଷମାଳ | ସୁନ୍ଦରୀ ବୃକ୍ଷମାଳ | |

ଏଥିରୁ ସମ୍ପୂର୍ଣ୍ଣ ବୁଝାଯାଉଅଛି ପ୍ରାଣୀଜଗତରେ ଜୀବ-ବିବିଧତା କୌଣସି ସ୍ଥାନର ଭୌଗଳିକ ବ୍ୟବସ୍ଥାକୁ ନେଇ ସୃଷ୍ଟି ହୋଇଥାଏ । ଯେଉଁ ଭୌଗଳିକ ବ୍ୟବସ୍ଥାରୁ ମଣିଷ ନିଜର ଅର୍ଥନୈତିକ ସୁଯୋଗ ଲାଭ କରିଥାଏ । ପ୍ରାକୃତିକ ବ୍ୟବସ୍ଥାକୁ ଯଦି ମଣିଷ ଧ୍ୱଂସ



କରିଦିଏ ତାହାହେଲେ ତାକୁହିଁ ତାହାର ପରାଭବ ଭୋଗ କରିବାକୁ ହୋଇଥାଏ । ସେଠାକାର ଅର୍ଥନୀତି ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇପଡେ । ଯାହାଘଟିଛି ଆମ ଉପକୂଳ ଅଞ୍ଚଳରେ ଏବେ । ଏବେ ଆମ ଉପକୂଳ ଅଞ୍ଚଳକୁ ଶିଳ୍ପ ବ୍ୟାଧି ଗ୍ରାସକଲାଣି । ଯେଉଁଠାରେ ପ୍ରାକୃତିକତା ଲୋପ ପାଇଯିବ ।

ପାରାଦ୍ୱୀପ ପଣ୍ୟ ବନ୍ଦର, ତୈଳ ବିଶୋଧନାଗାର, ଅଶୱାଲ ରସାୟନ ସାର ଶିଳ୍ପ, ମଦଶିଳ୍ପ, ପାରାଦ୍ୱୀପ୍ ଫସଫେଟ୍ ଶିଳ୍ପ ସାଙ୍ଗକୁ ଚୁଙ୍ଗୁଡିଚାଷ ଏବଂ ବଙ୍ଗଳା ଦେଶୀଙ୍କୁ ଥଇଥାନ ଏବଂ ସେମାନଙ୍କ ସଂଖ୍ୟା ବୃଦ୍ଧି ଏବେ ଉପକୂଳ ଅଞ୍ଚଳକୁ ମହା ପ୍ରମାଦ ଆଣିଦେଇଛି । ଏହା ବ୍ୟତୀତ ଇକୋ-ଟୁରୀଜିମ ବାହାନାରେ ଉପକୂଳ ଅଞ୍ଚଳରେ ତାରକା ହୋଟେଲ ନିର୍ବିଚାରରେ ସୃଷ୍ଟିକରିବା ଏବଂ ପ୍ରାକୃତିକତାକୁ ଉପେକ୍ଷାକରିବା ଯାହାଦ୍ୱାରା ଉପକୂଳବାସୀଙ୍କ ପାଇଁ ପ୍ରମାଦ ପରେ ପ୍ରମାଦକୁ ଆମନ୍ତ୍ରଣ କରିବା ।

ଏସବୁକୁ ଯଦି ସମୀକ୍ଷା କରାଯାଏ ତାହାହେଲେ ଆମ୍ଭମାନଙ୍କୁ ଦେଖିବାକୁ ମିଳିବ ଉପକୂଳବାସୀଙ୍କ ଆର୍ଥିକ ପ୍ରଗତି ଏହାଦ୍ୱାରା ବୃଦ୍ଧିପାଇ ନାହିଁ । ରାଷ୍ଟ୍ରୀୟ ଏବଂ ପ୍ରଦେଶର ହିତ ପାଇଁ ଶିଳ୍ପସବୁ ରହିବ, କିନ୍ତୁ ପ୍ରାକୃତିକତାକୁ ଧ୍ୱଂସକରି ନୁହେଁ । ପ୍ରକୃତି ବିରୁଦ୍ଧରେ ଗଲେ କୌଣସି ଶିଳ୍ପ ତିଷ୍ଠି ପାରିବ ନାହିଁ । ଏଣୁ ପ୍ରକୃତିକୁ ପ୍ରାଧାନ୍ୟଦେଇ ଏବଂ ପ୍ରକୃତି ସହିତ ସହଯୋଗକରି ଯେ କୌଣସି ଶିଳ୍ପ କଲେ ତାହା ଉପକୂଳ ଅର୍ଥନିତୀକୁ ସୁଦୃଢ଼ କରିବ ।

ଏଣୁ ଉପକୂଳ ବୁଦ୍ଧିଜୀବୀ ମାନଙ୍କପାଇଁ ଏବେ ଆଗେଇ ଆସିବାର ସମୟ ଆସିଛି ଉପକୂଳ ଜୈବବିବର୍ତ୍ତନ ଶିଳ୍ପ ସୃଷ୍ଟିକରିବାକୁ ଏବଂ ଏହି ଉଦ୍ୟମ ଅବ୍ୟାହତ ରଖିବାକୁ । ପ୍ରକୃତିର ଏକ ଜୈବ-ଯୋଜନା ଧ୍ୱଂସପାଇଗଲେ, ତାହା ଫେରିପାଇବାକୁ ମଣିଷପକ୍ଷେ ସମ୍ଭବ ହେବ ନାହିଁ । ଆମ ରାଷ୍ଟ୍ରର ଅର୍ଥନୀତିଜ୍ଞମାନେ ରାଷ୍ଟ୍ରର ରାଜଧାନୀରେ ବସି ଗ୍ରାମାଞ୍ଚଳପାଇଁ ଯୋଜନା ପ୍ରସ୍ତୁତ କରନ୍ତି, କିନ୍ତୁ ଆମ ଗ୍ରାମାଞ୍ଚଳରେ ମିଳୁଥିବା ପ୍ରାକୃତିକ ସମ୍ପଦକୁ ସବୁସମୟରେ ଉପେକ୍ଷାକରି ବୃହତ୍ତର ଶିଳ୍ପ ପାଇଁ ମନବଳାନ୍ତି । ଯେଉଁ ଭାବନା ପ୍ରକୃତି ବିରୁଦ୍ଧରେ ଯାଏ ଓ ଅର୍ଥନୀତି ସହିତ ମାନବ କଲ୍ୟାଣକୁ ସହଯୋଗ ଯୋଗାଇ ଦିଏ ନାହିଁ । ପ୍ରକୃତରେ ପରିକଳ୍ପନା ପାଖରେ ମଣିଷର ପରିକଳ୍ପନା ହାରମାନେ ।





# ଲଘୁ ବନଜାତ ଦ୍ରବ୍ୟ ଓ ପଞ୍ଚାୟତ

*ନିରାକାର ବେହେରା*

ଓଡ଼ିଶାରେ ଜୀବନ ଜୀବିକାର ପ୍ରଶ୍ନକୁ ନେଇ ଆଲୋଚନା କଲାବେଳେ ଜଙ୍ଗଲକୁ କଦାପି ବାଦ ଦିଆଯାଇପାରିବ ନାହିଁ । ପୁନଶ୍ଚ ଜଙ୍ଗଲ ଉପରେ ଗରୀବ ଆଦିବାସୀ ଯେପରି ନିର୍ଭରଶୀଳ, ସେହିପରି ସହରର ଚାକଚକ୍ୟ ମଧ୍ୟରେ ବାସକରୁଥିବା ସମ୍ଭ୍ରାନ୍ତ ପରିବାରଟି ମଧ୍ୟ ନିର୍ଭରଶୀଳ । ସେମାନଙ୍କଠାରୁ ଆହୁରି ଅଧିକ ନିର୍ଭରଶୀଳ ହେଉଛନ୍ତି ରାଜନୈତିକ ନେତା, କଣ୍ଟ୍ରାକ୍ଟର ଓ ଜଙ୍ଗଲ ମାଫିଆମାନେ । ଯେଉଁ ଉଦ୍ଦେଶ୍ୟ ନେଇ ଜଙ୍ଗଲ ଉପରେ ସମସ୍ତେ ନିର୍ଭରଶୀଳ, ସେଥିରେ ଆକାଶ ପାତାଳ ପ୍ରଭେଦ ରହିଛି । ବଞ୍ଚିବା ପାଇଁ ଆଦିବାସୀମାନେ ଜଙ୍ଗଲ ଉପରେ ନିର୍ଭର କରୁଥିବା ବେଳେ, ଅନ୍ୟମାନେ ଜଙ୍ଗଲକୁ ଲୁଟ କରିଥାନ୍ତି । ଓଡ଼ିଶାର ୭୦ ଲକ୍ଷରୁ ଅଧିକ ଆଦିବାସୀ ଜଙ୍ଗଲ ଉପରେ ପ୍ରତ୍ୟକ୍ଷ ରୂପେ ନିର୍ଭରଶୀଳ । ଦୁଇଓଳି ପେଟପୁରା ଖାଇବାକୁ ପାଉନଥିବା ସେହି ଆଦିବାସୀ ଓ ବନବାସୀମାନଙ୍କ ନିମନ୍ତେ ସରକାରୀ ନୀତି ଯେ ଆଦୌ ସ୍ପଷ୍ଟ ନୁହେଁ, ତାହା ସେମାନଙ୍କର ପ୍ରଗତି ହିଁ ସୂଚାଇ ଦିଏ । ଗୋଟିଏ ଜାତି ପାଇଁ ୫୬-୫୭ ବର୍ଷ ଆଦୌ କମ୍ ନୁହେଁ । କିନ୍ତୁ ଏହାରି ମଧ୍ୟରେ ସେମାନଙ୍କର ଯେଉଁ ହାରରେ ପ୍ରଗତି ହେବା କଥା ତାହା ଆଦୌ ହୋଇନାହିଁ ।

## ଲଘୁ ବନଜାତ ଦ୍ରବ୍ୟ ଓ ଆଦିବାସୀ:

ଜଙ୍ଗଲ ଘେରା ଅଞ୍ଚଳରେ ରହୁଥିବା ଆଦିବାସୀ ଜଙ୍ଗଲରୁ ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ କରି ନିଜର ଜୀବନ ନିର୍ବାହ କରିଥାନ୍ତି । ସେମାନଙ୍କର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନ ଜଙ୍ଗଲ ଆଧାରରେ ଗଢ଼ି ଉଠିଛି । ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହକରି ସେମାନେ ୬ମାସରୁ ଊର୍ଦ୍ଧ୍ୱ ସମୟ ବଞ୍ଚିଯାଆନ୍ତି । ଅର୍ଥାତ ସେମାନଙ୍କ ଆୟର ୫୦-୬୦ ପ୍ରତିଶତ ଭାଗ ଲଘୁ ବନଜାତ ଦ୍ରବ୍ୟରୁ ହିଁ ମିଳିଥାଏ । ଉପକୂଳ ଅଞ୍ଚଳର ଅଧିବାସୀ ବିଶେଷକରି ଚିଲିକା କୂଳରେ ବାସକରୁଥିବା ଲୋକମାନେ ଘରେ ଭାତହାଣ୍ଡି ବସାଇ ଯେପରି ଚିଲିକା ଚାଲିଯାନ୍ତି କିଛି ମାଛ ପାଇଁ, ଠିକ୍ ସେହିପରି ବଣ ମୂଲକର ଅଧିବାସୀ ଜଙ୍ଗଲରୁ ନାନା ପ୍ରକାର ଫଳମୂଳ, ଚେର, ପତ୍ର ପ୍ରଭୃତି ସଂଗ୍ରହ କରି ବଞ୍ଚିଯାଏ ।



## ଲଘୁ ବନଜାତ ଦ୍ରବ୍ୟ ଓ ସରକାର:

ପ୍ରାକୃତିକ ସମ୍ପଦ ଉପରେ ସରକାର ମାଲିକାନା ଜାହିର କରିଥାନ୍ତି । ଖଣି, ଜଙ୍ଗଲ, ଉପକୂଳ ଅଞ୍ଚଳରେ ନଦୀ, ନାଳ, ସମୁଦ୍ର ଏ ସବୁର ମାଲିକ ଲୋକ ନୁହଁନ୍ତି, ସରକାର । ଏ ସବୁଥିରୁ ପ୍ରଚୁର ରାଜସ୍ୱ ଆଦାୟ ହୋଇଥାଏ । ବିକାଶର ଦ୍ୱାହି ଦେଇ ଦୀର୍ଘ ବର୍ଷରୁ ବସ୍ତି ଆସିଥିବା ଓ ପ୍ରାକୃତିକ ସମ୍ପଦକୁ ସୁରକ୍ଷା ପ୍ରଦାନ କରି ଆସୁଥିବା ମୂଳ ଅଧିବାସୀଙ୍କୁ ଅନେକ ସମୟରେ ଜଙ୍ଗଲ ଓ ଖଣି ଅଞ୍ଚଳରୁ ବିସ୍ଥାପିତ ହେବାକୁ ପଡେ । ରାଜସ୍ୱ ବଢ଼ାଇବା ନାଆଁରେ ଲଘୁବନଜାତ ଦ୍ରବ୍ୟକୁ ନେଇ ଗତ ୫୦ ବର୍ଷ ଧରି ସରକାର ଯେଉଁ ସବୁ ନୀତି ପ୍ରଣୟନ କରିଥିଲେ, ତାଦ୍ୱାରା ଗରୀବ ଆଦିବାସୀର ଦୁଃଖ କମିବା ବଦଳରେ ବହୁଗୁଣିତ ହୋଇଛି । ସରକାରଙ୍କ ନୀତି ଯୋଗୁଁ ରାଜନେତା ଓ ଜଙ୍ଗଲ ମାଫିଆମାନେ କୋଟିକୋଟି ଟଙ୍କାର ଜଙ୍ଗଲ ସମ୍ପଦ ବିଶେଷକରି ଲଘୁ ବନଜାତ ଦ୍ରବ୍ୟରୁ ଫାଇଦା ଉଠାଇଛନ୍ତି । ଆଦିବାସୀମାନଙ୍କର ଦୀର୍ଘ ଦିନର ଆନ୍ଦୋଳନ ଫଳରେ ୧୯୯୬ ମସିହାରେ କେନ୍ଦ୍ର ସରକାର ଅନୁସୂଚୀତ ଅଞ୍ଚଳରେ ପଞ୍ଚାୟତ ସଂପ୍ରସାରଣ ଆଇନ ଓ ଆମ ରାଜ୍ୟ ସରକାର ଏହି ଆଇନକୁ ୧୯୯୭ ମସିହାରେ ପ୍ରଣୟନ କରିଥିଲେ । ପୁନଶ୍ଚ ୨୦୦୦ ମସିହାରେ ସରକାର ଗ୍ରାମ ପଞ୍ଚାୟତ ଗୁଡିକୁ ଦୁଇଟି ଦଫାରେ ୬୭ଟି ଲଘୁ ବନଜାତ ଦ୍ରବ୍ୟର ମାଲିକାନା ହସ୍ତାନ୍ତର କରିଛନ୍ତି । ଆଦୀବାସୀମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଏହା ପ୍ରଣୟନ କରାଯାଇଛି ବୋଲି କୁହାଯାଉଛି ।

## ଲଘୁବନଜାତ ଦ୍ରବ୍ୟ ଓ ପଞ୍ଚାୟତ:

ସ୍ୱାଧୀନତ୍ତୋର ଭାରତରେ ଯେତେଗୁଡିଏ ପ୍ରଗତିଶୀଳ ଯୋଜନା ପ୍ରସ୍ତୁତ କରାଯାଇଛି, ସେମାନଙ୍କ ମଧ୍ୟରୁ ପଞ୍ଚାୟତିରାଜ ବ୍ୟବସ୍ଥା ଅନ୍ୟ ସମସ୍ତଙ୍କ ଅପେକ୍ଷା ଲୋକମାନଙ୍କ ମଧ୍ୟରେ ଅଧିକ ଉଦ୍ଦୀପନା, ଉତ୍ସାହ ଓ ନୂତନ କର୍ମପ୍ରବଣତା ସୃଷ୍ଟି କରିଛି । ଭାରତବର୍ଷର ସର୍ବଶେଷ ଗରୀବ ପାଖରେ ବିକାଶର ଯୋଜନା ନେଇ ପହଞ୍ଚିବାର ଉନ୍ନତ ଓ ବ୍ୟବସ୍ଥିତ ମାଧ୍ୟମ ହେଉଛି ପଞ୍ଚାୟତିରାଜ ବ୍ୟବସ୍ଥା । ଭୌଗଳିକ ଦୃଷ୍ଟି କୋଣରୁ ବିଭିନ୍ନ ଅଞ୍ଚଳକୁ ଚିହ୍ନଟ କରିବା, ଲୋକମାନଙ୍କ ଦ୍ୱାରା ଗ୍ରାମୀଣ ବିକାଶ ନିମନ୍ତେ ଯୋଜନା ପ୍ରସ୍ତୁତ କରିବା ଓ ଲୋକ ନେତୃତ୍ୱର ପ୍ରସାର ଘଟାଇ ସରକାରଙ୍କ ଦାରିଦ୍ର୍ୟ ଦୂରୀକରଣ ଯୋଜନାକୁ କାର୍ଯ୍ୟକାରୀ କରିବା କ୍ଷେତ୍ରରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଅଧିକ ଗତିଶୀଳ ଓ ଲୋକାଭିମୁଖୀ କରାଇବା ପାଇଁ ବଳବନ୍ତରାୟ ମେହେଟ୍ଟା କମିଟି ପାଖରୁ ୭୩ତମ



ସମ୍ବିଧାନ ସଂଶୋଧନ ପର୍ଯ୍ୟନ୍ତ ଏକ ଦୀର୍ଘ ସମୟର ପ୍ରୟାସ ଆଜି ଆମକୁ ବିଶ୍ୱର ଶ୍ରେଷ୍ଠ ଗଣତନ୍ତ୍ର ରାଷ୍ଟ୍ରରୂପେ ମାନ୍ୟତା ଦେଇଛି । ତଫସିଲଭୁକ୍ତ ଅଞ୍ଚଳ ବା ଅନୁସୂଚିତ ଅଞ୍ଚଳ ନିମନ୍ତେ କେନ୍ଦ୍ର ସରକାର ଗ୍ରାମସଭା ପାଇଁ କେତକ ବିଶେଷ କ୍ଷମତା ପ୍ରଦାନ କରିଛନ୍ତି । ଯାହା ୨୪.୧୨.୧୯୯୬ଠାରୁ ଲାଗୁ ହେଲାଣି । ସେହିସବୁ ବିଶେଷ କ୍ଷମତା ମଧ୍ୟରୁ ଲଘୁ ବନଜାତଦ୍ରବ୍ୟ ସଂଗ୍ରହ, ପ୍ରକ୍ରିୟାକରଣ ଓ ବିକ୍ରୟ ଉପରେ ଗ୍ରାମସଭାର ସଂପୂର୍ଣ୍ଣ ମାଲିକାନା ଅନ୍ୟତମ । ସେହିପରି ଓଡ଼ିଶା ପଞ୍ଚାୟତିରାଜ ସଂଶୋଧନ ଆଇନ, ଡିସେମ୍ବର-୧୯୯୭ ଅନୁସାରେ ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲାପରିଷଦଙ୍କୁ ଅନେକ କ୍ଷମତା ପ୍ରଦାନ କରାଯାଇଛି । ସେହିସବୁ କ୍ଷମତାଗୁଡ଼ିକ ମଧ୍ୟରୁ ୬୭ଗୋଟି ଲଘୁ ବନଜାତଦ୍ରବ୍ୟର ସଂଗ୍ରହ, ପ୍ରକ୍ରିୟାକରଣ ଓ ବିକ୍ରୟ ଉପରେ ଗ୍ରାମପଞ୍ଚାୟତର ନିୟନ୍ତ୍ରଣ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ।

## ଲଘୁ ବନଜାତ ଦ୍ରବ୍ୟ ଗୁଡିକର ତାଲିକା:

| | | | |
|---|---|---|---|
| ୦୧. | ତେନ୍ତୁଳି, ମଂଜିଛଡା<br>ତେନ୍ତୁଳି, ତେନ୍ତୁଳି ମଂଜି | ୦୨. | ମହୁଲ ଫୁଲ |
| | | ୦୩. | ବାବୁନ |
| ୦୪. | କଣ୍ଟା ଝାଡୁ<br>(ଝାଡୁ ବା ଘୋଡା ଲାଞ୍ଜି) | ୦୫. | ଫୁଲ ଝାଡୁ |
| | | ୦୬. | ଘାସ ଝାଡୁ |
| ୦୭. | କୋଚିଲା ମଂଜି | ୦୮. | ହରିଡା |
| ୦୯. | ବାହାଡା | ୧୦. | ଅଁଳା |
| ୧୧. | ରିଠା ଫଳ | ୧୨. | ଭାଲିଆ |
| ୧୩. | ନିର୍ମଳା ବା କତକ | ୧୪. | ମହୁ |
| ୧୫. | ସିଆଳି ପତ୍ର | ୧୬. | ସବାଇ ଘାସ |
| ୧୭. | ଆମ୍ବ କୋଇଲି | ୧୮. | ଖଡ଼ ଘାସ |
| ୧୯. | ସିମୁଳି ତୁଳା | ୨୦. | ପାଲୁଅ |
| ୨୧. | ଧାତୁକି ଫୁଲ | ୨୨. | ପୁତ୍ରଣୀ |
| ୨୩. | ସିକାକାଇ | ୨୪. | ଜଙ୍ଗଲ ଜଡ଼ା ବା ଗବ |



୨୫. ପଳାସ ମଂଜି
୨୬. ସିଆଳି ମଂଜି
୨୭. ଇନ୍ଦ୍ରଜବା
୨୮. ଗିଲ (ମଂଜି ଓ ଚୋପା)
୨୯. ବେଣାଚେର
୩୦. ବଣହଳଦୀ
୩୧. ବଣକୋଳଥ
୩୨. ଗବ
୩୩. ତୁଳସୀ
୩୪. କାନ୍ତପଦ୍ମ
୩୫. ତାଳ ମାଖନ ମଂଜି
୩୬. ବାଇଡ଼ଙ୍କ ମଂଜି
୩୭. ବାଘନଖି ମଂଜି
୩୮. କମଳାଗୁଣ୍ଡି ଫଳ
୩୯. ଲଣ୍ଡାବଗୁଲି
୪୦. ବେଲ
୪୧. ଭୁଇଁ ନିମ
୪୨. ଖଜୁରୀପଟିଆ
୪୩. ରୋହିଣୀ ଫଳ
୪୪. ଭୁରସୁଙ୍ଗା ପତ୍ର
୪୫. ରାସ୍ନା
୪୬. ଫେଣଫେଣା ଫଳ
୪୭. ସିଦ୍ଧ ଫଳ
୪୮. ଶତାବରୀ
୪୯. କାଠଲଇ
୫୦. ଅତୁଣ୍ଡିଲଇ
୫୧. ଖେଲୁଆଲଇ
୫୨. ହଂସଲତା
୫୩. ଏକଶିରା ଫଳ
୫୪. କାଠ ଛତୁ
୫୫. ସପ/ମସିଣା ଘାସ
୫୬. ଅନନ୍ତ ମୂଳ (ସୁଗନ୍ଧା)
୫୭. ଅଣ୍ଟିଆ ପଟ
୫୮. ନାଗେଶ୍ୱର ଫୁଲ
୫୯. ମାଙ୍କଡ଼ କେନ୍ଦୁ
୬୦. ଅତୁଣ୍ଡି ଫଳ
୬୧. ମହୁଲ ମଂଜ
୬୨. କୁସୁମ ମଂଜି
୬୩. କରଞ୍ଜ ମଂଜି
୬୪. ନିମ ମଂଜି
୬୫. ଚାର ମଂଜି
୬୬. ଚାକୁଣ୍ଡା ମଂଜି
୬୭. ବବୁଲ ମଂଜି

## ସରକାରୀ ନିର୍ଦ୍ଦେଶନାମା:

* ମାର୍ଚ୍ଚ ୩୧,୨୦୦୦ ମସିହାରେ ରାଜ୍ୟ ସରକାରଙ୍କ ଜଙ୍ଗଲ ଓ ପରିବେଶ ବିଭାଗ ଦ୍ୱାରା ଜାରି କରାଯାଇଥିବା ସଂକଳ୍ପନାମା ଉପରୋକ୍ତ ନୀତି ଓ ବ୍ୟବସ୍ଥା ସାରା ରାଜ୍ୟରେ କିପରିଭାବେ ଲାଗୁ ହୋଇପାରିବ ଏବଂ ଗ୍ରାମ ପଞ୍ଚାୟତମାନେ କିପରି ଭାବେ ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ ଓ ବ୍ୟବସାୟକୁ ନିୟନ୍ତ୍ରଣ କରିବେ, ତାହାର ଏକ ବିଧିବଦ୍ଧ ବ୍ୟବସ୍ଥା ଓଡ଼ିଶା ସରକାରଙ୍କ ପଞ୍ଚାୟତିରାଜ (ଗ୍ରା.ପ.) ବିଭାଗ ଦ୍ୱାରା ୨୦୦୦ ମସିହା ମେ ମାସ ୨୬ତାରିଖରେ ଏକ ଆଦେଶନାମା (ନଂ. ୮୧୩୧/ ଗ୍ରା.ପ./ଏଲ୍ଏସ୍.III/୪୧/୨୦୦୦) ଜାରି କରିଛନ୍ତି । ଏଥିରେ ପଞ୍ଜିକରଣ ନିମନ୍ତେ ଆବେଦନ ପତ୍ର, କ୍ରୟ ନିମନ୍ତେ ଅନୁମତି ପତ୍ର/ପ୍ରମାଣ ପତ୍ର, ପଞ୍ଜିକରଣକୁ ରଦ୍ଦ କରିବା ପ୍ରଭୃତି ସୂଚନା ଦର୍ଶା ଯାଇଛି ।

* ୨୦୦୦ ମସିହା ମାର୍ଚ୍ଚ ମାସ ୩୧ ତାରିଖ ଦିନ ରାଜ୍ୟ ସରକାର ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ ଓ ବ୍ୟବସାୟ ନୀତି-୨୦୦୦ ଘୋଷଣା କରିଥିଲେ । ଏହି ନୀତିରେ ପ୍ରଥମଥର ପାଇଁ ଜଙ୍ଗଲଜାତ ଦ୍ରବ୍ୟକୁ ଆଦିବାସୀ ତଥା ଗ୍ରାମାଞ୍ଚଳରେ ବସବାସ କରୁଥିବା ଗରୀବ ଲୋକଙ୍କ ଆୟର ଏକ ମୁଖ୍ୟ ଉତ୍ସ ବୋଲି ରାଜ୍ୟ ସରକାର ସ୍ୱୀକାର କରିବା ସହ ୬୦ଟି ବନଜାତ ଦ୍ରବ୍ୟକୁ ଲଘୁ ବନଜାତ ଦ୍ରବ୍ୟର ଆଖ୍ୟା ଦେଇ ତାହାର ସଂଗ୍ରହ, କିଣା ବିକା ଦାୟିତ୍ୱ ଗ୍ରାମ ପଞ୍ଚାୟତ ହାତରେ ସମର୍ପଣ କରିଛନ୍ତି ।

* "ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ ଓ ବ୍ୟବସାୟ ନୀତି-୨୦୦୦" ସମ୍ବନ୍ଧୀୟ ସଂକଳ୍ପନାମା ୩୧ ମାର୍ଚ୍ଚରେ ଜାରି ହେବା ପରେ ଏ ଦିଗରେ କାର୍ଯ୍ୟ କରୁଥିବା ବିଭିନ୍ନ ସରକାରୀ ଏବଂ ବେସରକାରୀ ସଂସ୍ଥାମାନେ ଅଣ-କାଷ୍ଠ ବନଜାତ ଦ୍ରବ୍ୟ ଶ୍ରେଣୀରେ ରଖାଯାଇଥିବା ୭ଟି ତୈଳବୀଜକୁ ଲଘୁ ବନଜାତ ଦ୍ରବ୍ୟ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିବା ନିମନ୍ତେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରିଥିଲେ । ଫଳତଃ ୨୩ଅଗଷ୍ଟ ୨୦୦୦ ମସିହାରେ ୭ଟି ତୈଳବୀଜକୁ ଲଘୁବନଜାତ ଦ୍ରବ୍ୟ ଶ୍ରେଣୀରେ ଅର୍ନ୍ତଭୁକ୍ତ କରିଛନ୍ତି ବୋଲି ରାଜ୍ୟ ସରକାରଙ୍କ ଦ୍ୱାରା ଏକ ବିଜ୍ଞପ୍ତି ପ୍ରକାଶ ପାଇଥିଲା । ରାଜ୍ୟ ସରକାରଙ୍କର ଏହି ନିଷ୍ପତ୍ତି ଦ୍ୱାରା ଲଘୁ ବନଜାତ ଦ୍ରବ୍ୟର ସଂଖ୍ୟା ୬୦ରୁ ୬୭କୁ ବୃଦ୍ଧି ପାଇବା ସହ ଲଘୁ ବନଜାତ ଦ୍ରବ୍ୟର କ୍ରୟ ଓ ବିକ୍ରୟ ପାଇଁ ନିର୍ଦ୍ଧାରିତ ବିଧି ଓ ବ୍ୟବସ୍ଥା ଉକ୍ତ ୭ଟି ତୈଳବୀଜ ପାଇଁ ମଧ୍ୟ ପ୍ରଯୁଜ୍ୟ ହୋଇଛି ।

## ଲଘୁ ବନଜାତ ଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରଣ ଓ ପଞ୍ଜିକରଣ ବ୍ୟବସ୍ଥା:

ପ୍ରତ୍ୟେକ ବର୍ଷ ସେପ୍ଟେମର ମାସରେ ପଞ୍ଚାୟତ ସମିତିର ବୈଠକରେ ଲଘୁ ବନଜାତ ଦ୍ରବ୍ୟ ଗୁଡିକର ମୂଲ୍ୟ ନିର୍ଦ୍ଧାରଣ ହେବ । ଏହି ବୈଠକକୁ ବନଖଣ୍ଡ ଅଧିକାରୀ, ଆଦିବାସୀ ଉନ୍ନୟନ ସମବାୟ ନିଗମ, ଓଡ଼ିଶା ବନ ଉନ୍ନୟନ ନିଗମ ଏବଂ ଟ୍ରାଇଫେଡର ପ୍ରତିନିଧିଙ୍କୁ ଡକାଯିବ । ପଞ୍ଚାୟତ ସମିତି ଦ୍ୱାରା ନିର୍ଦ୍ଧାରିତ ମୂଲ୍ୟ ଜାଣିବାପରେ ଗ୍ରାମସଭାରେ ଏହା ଆଲୋଚିତ ହେବ ଓ ଅନୁମୋଦିତ ହେବ । ଗ୍ରାମସଭା ଚାହିଁଲେ ନିର୍ଦ୍ଧାରିତ ମୂଲକରେ ପରିବର୍ତ୍ତନ କରିପାରିବେ । ପଞ୍ଚାୟତ ସମିତି ଲଘୁ ବନଜାତ ଦ୍ରବ୍ୟ ମୂଲ୍ୟ ନିର୍ଦ୍ଧାଣ କରିବାରେ ବ୍ୟର୍ଥ ହେଲେ ଜିଲ୍ଲାପାଳ ଅକ୍ଟୋବର ମାସରେ ପଞ୍ଚାୟତ ସମିତିର ସ୍ୱତନ୍ତ୍ର ବୈଠକ ଡାକି ବନଜାତ ଦ୍ରବ୍ୟର ସର୍ବନିମ୍ନ ମୂଲ୍ୟ ନିର୍ଦ୍ଧାରଣ କରିବେ ବୋଲି ପ୍ରାବଧାନ ରହିଛି ।

## ବର୍ତ୍ତମାନର ସ୍ଥିତି ସମ୍ପର୍କରେ ମୂଲ୍ୟାଙ୍କନ:

ଲଘୁ ବନଜାତ ଦ୍ରବ୍ୟ ଉପରେ ପଞ୍ଚାୟତ ମାଲିକାନାକୁ ନେଇ ସମାଜବିଜ୍ଞାନୀମାନେ ଭିନ୍ନ ଭିନ୍ନ ମତପୋଷଣ କରିଥାନ୍ତି । ସାଧାରଣ ଅଧିବାସୀ, ପଞ୍ଚାୟତ ପ୍ରତିନିଧି, ସରକାରୀ ଅଧିକାରୀ, ରାଜନୈତିକ ନେତା ଓ ସମାଜ ବିଜ୍ଞାନୀମାନେ ନିଜ ନିଜ ଦୃଷ୍ଟିକୋଣ ଅନୁସାରେ ଲଘୁ ବନଜାତ ଦ୍ରବ୍ୟ ଓ ପଞ୍ଚାୟତ ବିଷୟଟିକୁ ଚର୍ଚ୍ଚା କରିଥାନ୍ତି । ସମସ୍ତ ପ୍ରକାର ସରକାରୀ ନିର୍ଦ୍ଦେଶନାମା, ପ୍ରଗତିଶୀଳ ଗୋଷ୍ଠୀର ଆନ୍ଦୋଳନ କିମ୍ବା ଆଦିବାସୀମାନଙ୍କ ସଚେତନତାର ଉର୍ଦ୍ଧ୍ୱରେ ରହି ଜଙ୍ଗଲ ମାଫିଆମାନେ ସେମାନଙ୍କର ରଣ କୌଶଳ ତିଆରି କରିବା ସହ ଜଙ୍ଗଲରୁ ଲଘୁ ବନଜାତ ଦ୍ରବ୍ୟକୁ ହଡପ କରିବା ଓ ବଜାରକୁ ମଧ୍ୟ ନିଜ ନିୟନ୍ତ୍ରଣରେ ରଖିବା କାର୍ଯ୍ୟ ଚାଲୁ ରଖିଛନ୍ତି । ଏହିପରି ଏକ ସ୍ଥିତାବସ୍ଥାରେ ବର୍ତ୍ତମାନର ଜଟିଳ ସ୍ଥିତିକୁ ମୂଲ୍ୟାଙ୍କନ କରିବା ଓ ସମସ୍ୟା ସମାଧାନର ପନ୍ଥା ନିରୂପଣ କରିବା ଅତ୍ୟନ୍ତ କଷ୍ଟପ୍ରଦ । ତେଣୁ ପଞ୍ଚାୟତକୁ ଦୃଷ୍ଟିରେରଖି ଆମେ ସେ ଦିଗରେ କିଛି ବିଚାର କରିପାରିବା ।

* ଗ୍ରାମ ପଞ୍ଚାୟତକୁ ଲଘୁ ବନଜାତ ଦ୍ରବ୍ୟର ମାଲିକାନା ପ୍ରଦାନ କରିବା ସହ ସରକାର ଅନ୍ୟଯେଉଁ ଆନୁସଙ୍ଗିକ ପଦକ୍ଷେପ ନେବାର ଥିଲା ତାହା ନେଇ ନଥିବାରୁ ପଞ୍ଚାୟତ ଗୁଡିକ ବିଭିନ୍ନ ପ୍ରକାର ସମସ୍ୟାର ସମ୍ମୁଖୀନ ହେଉଛନ୍ତି । ଯଥା:- ବଜାର ବ୍ୟବସ୍ଥା, ସଂଗ୍ରହକାରୀ ମାନଙ୍କ ପଞ୍ଜିକରଣ, ଗଚ୍ଛିତ କରି ରଖିବାର ସ୍ଥାନ, ମାଫିଆ ମାନଙ୍କ ଦୌରାତ୍ମ୍ୟରୁ ମୁକ୍ତି ଇତ୍ୟାଦି....

* ପ୍ରାଥମିକ ସଂଗ୍ରହକାରୀ ମାନଙ୍କ ଦ୍ୱାରା ସଂଗୃହୀତ ଦ୍ରବ୍ୟକୁ ବିକ୍ରୟ କରିବା ନିମନ୍ତେ ଏକ ସୁ-ସଂଗଠିତ ବଜାର ବ୍ୟବସ୍ଥା ନାହିଁ । ଏପରିକି ସଂଗୃହିତ ଦ୍ରବ୍ୟ ହାଟରେ ପହଞ୍ଚିବା ପୂର୍ବରୁ ବ୍ୟବସାୟୀମାନେ ଅଧାବାଟରୁ କିଣି ନେଇଥାନ୍ତି । ପ୍ରାଥମିକ ସଂଗ୍ରହକାରୀମାନେ ଗରୀବ ଶ୍ରେଣୀର ହୋଇଥିବାରୁ ସେମାନେ ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହର ଅନେକ ଦିନ ପୂର୍ବରୁ ବଡ ବଡ ବ୍ୟବସାୟୀମାନଙ୍କ ଠାରୁ ଟଙ୍କା କରଜରେ ଆଣିଥାନ୍ତି । ଯାହାଫଳରେ ବଜାର ଦରଠାରୁ ବହୁ କମ୍ ମୂଲ୍ୟରେ ସେମାନେ ସେହି ବ୍ୟବସାୟୀମାନଙ୍କୁ ଦେଇଥାନ୍ତି ।

* ପ୍ରକ୍ରିୟାକରଣ ନିମନ୍ତେ ଯେଉଁ ସରକାରୀ ପ୍ରୋତ୍ସାହନ ମିଳିବା କଥା ତାହା ମିଳିପାରୁନଥିବାରୁ ଆଦିବାସୀ ଅଞ୍ଚଳରେ କୁଟୀରଶିଳ୍ପ ପ୍ରତିଷ୍ଠା ସମ୍ଭବ ହୋଇପାରୁନାହିଁ ।

* ଲଘୁବନଜାତ ଦ୍ରବ୍ୟ ସଂଗ୍ରହ କରିବାରେ ଆଦିବାସୀମହିଳା ମାନଙ୍କର ପ୍ରମୁଖ ଭୂମିକା ଥାଏ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଜଙ୍ଗଲରେ ରହି ସେମାନେ ଯେଉଁ ପରିଶ୍ରମ କରିଥାନ୍ତି, ତାହାର ଉଚିତ ମୂଲ୍ୟ ସେମାନେ ପାଇନଥାନ୍ତି । ପୁନଶ୍ଚ ଆଦିବାସୀ ଅଞ୍ଚଳରେ ଅବିବାହିତ ମାତୃତ୍ୱ, ବିବାହିତ ମହିଳାଙ୍କ ବିଭିନ୍ନ ସମସ୍ୟା, ଜଙ୍ଗଲରେ ବିଭିନ୍ନ ଦୁର୍ଘଟଣାରୁ ରକ୍ଷା ପାଇବା ନିମନ୍ତେ ସେମାନଙ୍କୁ ସୁରକ୍ଷା ପ୍ରଦାନ କରିବା ପାଇଁ କିଛି ବିଧିବଦ୍ଧ ଯୋଜନା ନାହିଁ ।

* ଆଦିବାସୀ ଅଞ୍ଚଳର ଅଧିକାରୀ, ପଞ୍ଚାୟତ ପ୍ରତିନିଧି, ବନ ବିଭାଗର କର୍ମଚାରୀ ମାନଙ୍କ ମଧ୍ୟରେ ସମନ୍ୱୟ ଅଭାବରୁ ମଧ୍ୟ ଅନେକ ଅସୁବିଧା ସୃଷ୍ଟି ହୋଇଥାଏ ।

ସଂପ୍ରତି କାର୍ଯ୍ୟରତ କଲ୍ୟାଣକାରୀ ସରକାର ଦ୍ୱନ୍ଦ୍ୱାତ୍ମକ ପଦକ୍ଷେପ ନେବାକୁ ବାଧ୍ୟ । କାରଣ ସମାଜର ବିଭିନ୍ନ ବର୍ଗର ହିତ ସାଧାନ ପାଇଁ ସେ କାର୍ଯ୍ୟକରିବେ, ସେଇଥିରେ ହିଁ ଏ ବ୍ୟବସ୍ଥାର ସ୍ୱାର୍ଥ ନିହିତ । ନହୋଇଥିଲେ ଆଦିବାସୀମାନଙ୍କ ବିକାଶ ପାଇଁ ପଦକ୍ଷେପ ନିଆଯାଇଥିବା ବେଳେ, ସେଥିରୁ ଜଙ୍ଗଲ ମାଫିଆମାନେ ଲାଭାନ୍ୱିତ ହେବେ ବା କେମିତି ? ସରକାରଙ୍କ ଜନହିତକାରୀ ପଦକ୍ଷେପକୁ ଦେଖିଲେ ନିମ୍ନଲିଖିତ ସୁବିଧା ଗୁଡିକ ପ୍ରତି ଧ୍ୟାନ କେନ୍ଦ୍ରିତ ହୋଇଥାଏ । କିନ୍ତୁ ଏ ଦିଗରେ ଆମର ଏକ ମୌଳିକ ବିଚାର ରହିଛି ।

* ଅନେକ ସମୟରେ ଦେଖିବାକୁ ମିଳୁଛି, ସ୍ଥାନୀୟ ଅଧିବାସୀଙ୍କୁ କେବଳ ସନ୍ତୁଷ୍ଟ କରିବା ପାଇଁ ସରକାର ଏକ ବିଜ୍ଞପ୍ତି ପ୍ରକାଶ କରିଥାନ୍ତି । କିମ୍ବା ଏକ ବଡ ଧରଣର

ଜନ ଆନ୍ଦୋଳନକୁ ଏଡାଇଯିବା ପାଇଁ ସରକାର ବିଭିନ୍ନ ଜନକଲ୍ୟାଣକାରୀ ପଦକ୍ଷେପ ନେଇଥାନ୍ତି । କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ତାର ସଠିକ କାର୍ଯ୍ୟାନ୍ୱୟନ ହେଉଛି ନା ନାହିଁ ସେ ବିଷୟରେ ଆଦୌ ଧ୍ୟାନ ଦେଇ ନଥାନ୍ତି । ଏଇ ନିକଟରେ ସରକାରଙ୍କ ଦ୍ୱାରା ଏଗାରଟି ବିଭାଗ ତ୍ରି-ସ୍ତରୀୟ ପଞ୍ଚାୟତିରାଜ ଅଧିନକୁ ଦିଆଯାଇଛି, କିନ୍ତୁ ତତ୍ ସଂକ୍ରାନ୍ତୀୟ ଚିଠି ସେହି ସବୁ ବିଭାଗକୁ ଦିଆଯାଇନାହିଁ । ତେଣୁ ଲଘୁ ବନଜାତ ଦ୍ରବ୍ୟ ସମ୍ବନ୍ଧୀୟ ସବିଶେଷ ସୂଚନା ବିଭିନ୍ନ ଆଦିବାସୀ ଉନ୍ନୟନ ବିଭାଗ ଓ ସରକାରୀ ଏବଂ ବେସରକାରୀ ସଂଗଠନ ମାନଙ୍କୁ ଯିବା କଥା ।

* ଗ୍ରାମ ପଞ୍ଚାୟତରେ ପଞ୍ଜିକରଣ କରିବା ପରବର୍ତ୍ତୀ ତଦାରଖ, ସୁପରିଚାଳନା ନିମନ୍ତେ ଗ୍ରାମ ପଞ୍ଚାୟତ କଣ କରିବ, ସେ ସଂକ୍ରାନ୍ତରେ ମଧ୍ୟ ପଞ୍ଚାୟତ ସ୍ପଷ୍ଟ ହୋଇଯିବା ବିଧେୟ ।

* ପ୍ରାଥମିକ ସଂଗ୍ରହକାରୀ ଯେପରି କେବଳ ଗ୍ରାମାଞ୍ଚଳର ଆଦିବାସୀ କିମ୍ବା ଗରୀବ ବ୍ୟକ୍ତିଟିଏ ହୋଇପାରିବ, ତାହା ଉପରେ ଦୃଷ୍ଟି ଦେବାକୁ ପଡିବ । ନହେଲେ ଜଙ୍ଗଲ ମାଫିଆ ବା ଗ୍ରାମର ସାହୁକାରମାନେ ଉକ୍ତ ସ୍ଥାନ ମାଡିବସିବେ । ପରେ ସେମାନେ ଆଦିବାସୀମାନଙ୍କୁ ମୂଲିଆ କରି ଜଙ୍ଗଲକୁ ବନଜାତ ଦ୍ରବ୍ୟ ସଂଗ୍ରହ ପାଇଁ ପଠାଇବେ ।

* ବିଶେଷକରି ଆଦିବାସୀ ମହିଳା ଓ ସ୍ୱୟଂ ସହାୟିକା ଗୋଷ୍ଠୀମାନଙ୍କୁ ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ, ବିକ୍ରୟ ଓ ପ୍ରକ୍ରିୟାକରଣ ପାଇଁ ସୁବିଧା ସୁଯୋଗ ଯୋଗାଇଦେବା ନିମନ୍ତେ ପଞ୍ଚାୟତ ଦୃଷ୍ଟି ଦେବା ଉଚିତ ।

* ମୂଲ୍ୟ ନିର୍ଦ୍ଧାରଣ ପଦ୍ଧତି ସମ୍ପର୍କରେ ସରକାରଙ୍କଠାରୁ ଆରମ୍ଭ କରି ଗ୍ରାମସଭା ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ଏକ ସ୍ପଷ୍ଟ ଚିତ୍ର ରହିବା ଦରକାର । ଯଦି ସର୍ବନିମ୍ନ ନିର୍ଦ୍ଧାରିତ ମୂଲ୍ୟ ବ୍ୟବସାୟୀମାନେ ନ ଦିଅନ୍ତି ବା ବଜାରରେ ସେହି ଦାମରେ ବିକ୍ରି ହୋଇ ନପାରିବ, ତେବେ ସେ ସମୟରେ କଣ କରାଯିବ, ତାହା ମଧ୍ୟ ସ୍ଥିର ହୋଇଯିବା ଉଚିତ୍ ।

## ମୌଳିକ ବିଚାର:

ତେଣୁ ପରିଶେଷରେ ଏତିକି କୁହାଯାଇପାରେ - ଲଘୁ ବନଜାତ ଦ୍ରବ୍ୟ ସଂଗ୍ରହ, ବିକ୍ରୟ ଓ ପ୍ରକ୍ରିୟାକରଣର ସଠିକ ରୂପାୟନ ଯଦି ହୋଇପାରିବ ତେବେ ଆଦିବାସୀ



ମାନଙ୍କର ସ୍ଥାୟୀ ବିକାଶ ସମ୍ଭବ ହେବ । ଏ ଦିଗରେ ପଞ୍ଚାୟତ ଏକ ପ୍ରମୁଖ ଭୂମିକା ନେବାକୁ ହେଲେ ଅନୁନ୍ନତ ମଧ୍ୟ ସେହି ସ୍ତରକୁ ଆସିବା କଥା । ପଞ୍ଚାୟତକୁ ସମୃଦ୍ଧ ଓ ସଶକ୍ତ କରାଇବାରେ ଗାଁ ଟାଉଟର, ଜଙ୍ଗଲ ମାଫିଆ ଅନ୍ତରାୟ ହେବେ ନିଶ୍ଚୟ । ତେଣୁ ପଞ୍ଚାୟତ ପ୍ରତିନିଧିମାନେ ଏ ଦିଗରେ ଜାଗ୍ରତ ପ୍ରହରୀ ରୂପେ କାମ କରିବା ଉଚିତ୍ । ପ୍ରାଥମିକ ସଂଗ୍ରହକାରୀ ସଂଗ୍ରହ କରୁଥିବା ବନଜାତ ଦ୍ରବ୍ୟ ଯେପରି ଠିକ୍ ଦାମରେ ଠିକ୍ ବ୍ୟବସାୟୀଙ୍କୁ ବିକ୍ରୟ ହୋଇପାରିବ, ସେ ଦିଗରେ ପଞ୍ଚାୟତ ଦୃଷ୍ଟିଦେବ । ବ୍ୟବସାୟୀମାନଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇବାକୁ ହେଲେ ପଞ୍ଚାୟତ ନିଜ ଗୋଦାମଘରେ ସମସ୍ତ ବନଜାତ ଦ୍ରବ୍ୟକୁ ଗଚ୍ଛିତକରି ରଖିବାର ସୃଷ୍ଟି କରିବା ଉଚିତ୍ । କିମ୍ବା ଯଦି ପଞ୍ଚାୟତ ପ୍ରାଥମିକ ସଂଗ୍ରହକାରୀଙ୍କଠାରୁ କିଣି ନିଏ ତେବେ ଅତ୍ୟନ୍ତ ଭଲ । କିମ୍ବା ଏ ଦିଗରେ ଟି.ଡି.ସି.ସି., ଟ୍ରାଇଫେଡ୍, ଓ.ଏଫ୍.ଡି.ସି. ଭଳି ସଂସ୍ଥାମାନେ ଏକ ଲୋକାଭିମୁଖୀ ଭୂମିକା ନେବା କଥା । ପଞ୍ଚାୟତର ଏତାଦୃଶ କାମକୁ ଗ୍ରାମସଭା ଓ ପଲ୍ଲୀସଭା ନିଜ ନିୟନ୍ତ୍ରଣରେ ରଖିବ । ଅର୍ଥାତ ଏକ ଜନବାଦୀ ବିକଳ୍ପ ରାଜନୈତିକ ପ୍ରକ୍ରିୟା ଦ୍ୱାରା ଗ୍ରାମାଞ୍ଚଳର ଲୋକମାନେ ସଂଗଠିତ ହେଲେ ନିଜର ଅଧିକାରକୁ ନେଇ ସେମାନେ ଅଧିକ ସଚେତନ ହୋଇପାରିବେ । ଆଦିବାସୀମାନଙ୍କ ମଧ୍ୟରେ ଏହି ସଂଗଠନ ଶକ୍ତି ସମଗ୍ର ଓଡ଼ିଶାରେ ଉଦାହରଣ ସୃଷ୍ଟି କରିଛି । ମହିଳା ମାନଙ୍କ ଦ୍ୱାରା ମଦ ବିରୋଧୀ ଆନ୍ଦୋଳନ, କାଶୀପୁର ଓ ଲାଞ୍ଜିଗଡର ଆନ୍ଦୋଳନ, ଜଙ୍ଗଲ ସୁରକ୍ଷା ଆନ୍ଦୋଳନ, ଜଙ୍ଗଲ ମାଫିଆ ମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ସବୁ ଆଦିବାସୀ ମାନଙ୍କ ସୁ-ସଂଗଠିତ ଶକ୍ତିକୁ ପରିଦୃଶ୍ୟ କରାଏ । ଲଘୁ ବନଜାତ ଦ୍ରବ୍ୟ ସଂକ୍ରାନ୍ତୀୟ ଏକ ନୂତନ ସାମଗ୍ରୀକ ନୀତି ପ୍ରଣୟନ ପାଇଁ ଆଦିବାସୀ ସଂଗଠନ ସବୁ ଏ ଦିଗରେ ପ୍ରୟାସ ଆରମ୍ଭ କଲେଣି । ଖୁବ ଶୀଘ୍ର ଏହା ସମ୍ଭବ ହେବ ।



# ଜଙ୍ଗଲ ଓ ଜନତା

*ଭାଲଚନ୍ଦ୍ର ଷଡ଼ଙ୍ଗୀ*

ଜଙ୍ଗଲ ସହିତ ଜନତା ବିଶେଷତଃ ଆଦିବାସୀର ସମ୍ପର୍କ ଅତି ପୁରାତନ ଓ ନିବିଡ ଅଟେ । ଭାରତରେ ଆର୍ଯ୍ୟ ଓ ଦ୍ରାବିଡ ପରି ଆଧୁନିକ ସଭ୍ୟତାର ଆଗମନର ଅନେକ ପୂର୍ବରୁ ଆଦିବାସୀ ହିଁ ଏ ଦେଶର ଆଦିମ ଅଧିବାସୀ ଅଟନ୍ତି । ଜଙ୍ଗଲ ହିଁ ସେମାନଙ୍କର ଜୀବନ ଜୀବିକାର ମୂଳ ଉତ୍ସ ଓ ତାକୁ ଆଧାର କରି ହିଁ ଶହ ଶହ ବର୍ଷ ଧରି ଆଦିବାସୀ ସଭ୍ୟତା ବଞ୍ଚିରହିଛି । ଜଙ୍ଗଲ ଭିତରେ ଛୋଟ ଛୋଟ ଜମି କରି ଚାଷ କରିବା, ଜଙ୍ଗଲଜାତ ଦ୍ରବ୍ୟର ସଂଗ୍ରହ କରି ବିକ୍ରି କରିବା ମଧ୍ୟ ଦେଇ ସେ ତାର ଗୁଜରାଣ ମେଣ୍ଟାଇଥାଏ । ଜଙ୍ଗଲର ବିଭିନ୍ନ ଚେର, ପତ୍ର ଓ ଗୁଳ୍ମରୁ ତିଆରି ଔଷଧରେ ତାର ରୋଗ ଚିକିତ୍ସା କରିଥାଏ । କିନ୍ତୁ ଆଦିବାସୀ ଓ ଜଙ୍ଗଲ ମଧ୍ୟରେ ଥିବା ଏହି ସରଳ ସମ୍ପର୍କଟିକୁ ଗ୍ରହଣ କରିବାକୁ ଆମ ଦେଶର ଶାସକ ବର୍ଗ କେବେ ବି ଚାହିଁ ନାହାଁନ୍ତି । ବ୍ରିଟିଶଠାରୁ ଆରମ୍ଭ କରି ଏ ପର୍ଯ୍ୟନ୍ତ ସମସ୍ତ ଶାସକ ଶ୍ରେଣୀ ବିଭିନ୍ନ ଶୋଷଣ ଓ ଦମନମୂଳକ ଆଇନ ମଧ୍ୟ ଦେଇ କ୍ରମାଗତ ଭାବେ ଜଙ୍ଗଲ ଉପରୁ ତାର ପାରମ୍ପରିକ ଅଧିକାରକୁ ଛଡେଇ ଆସିଛି ।

ପ୍ରଥମେ ଆର୍ଯ୍ୟ, ଦ୍ରାବିଡ ପରି ବୈଦେଶିକ ଜାତିମାନଙ୍କର ଆକ୍ରମଣ ଫଳରେ ଆଦିବାସୀ ନଇକୂଳିଆ ସମତଳ ଅଞ୍ଚଳ ଛାଡି ଘଞ୍ଚ ଜଙ୍ଗଲ ଭିତରକୁ ଠେଲି ହୋଇଯାଇଥିଲା । ଜଙ୍ଗଲ ଭିତରେ ରହି ବାହାର ଦୁନିଆ ସହ ତାର ଅତି କମ୍ ସମ୍ପର୍କ ଥିଲା । ତାର ଦୈନନ୍ଦିନ ବ୍ୟବହାର ପାଇଁ ଖୁବ୍ କମ୍ ଜିନିଷ ଦରକାର ପଡୁଥିବାରୁ ତାଙ୍କୁ ଜଙ୍ଗଲ ବାହାରେ ଥିବା ବଜାରକୁ ମଧ୍ୟ ଯିବା ଦରକାର ପଡୁ ନଥିଲା । କେତେକ ଅଞ୍ଚଳର ଆଦିବାସୀମାନେ ତ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ଆଗମନ ପର୍ଯ୍ୟନ୍ତ ଥିଲେ ଅନାବିଷ୍କୃତ । ଜଙ୍ଗଲ ଭିତରେ ସଭ୍ୟତାର ବିକାଶଠାରୁ ଦୂରରେ ରହି ମଧ୍ୟ ନିଜ ଚାରିପାଖରେ ଜମି, ଜଳ, ଜଙ୍ଗଲ ଓ ଅନ୍ୟ ପ୍ରାକୃତିକ ସମ୍ପଦ ଉପରେ ଥିଲା ତାର ଅଖଣ୍ଡ ଅଧିକାର । ତାର ପ୍ରକୃତି କୈନ୍ଦ୍ରିକ ସମାଜରେ ତାର ନିଜସ୍ୱ ନିୟମ ଓ ଆଇନ୍ କାନୁନ୍‌କୁ ନେଇ ସେ ଏକ ପ୍ରକାର ଆତ୍ମ ନିୟନ୍ତ୍ରଣ ଶାସନ ପଦ୍ଧତିକୁ ଚଳାଉଥିଲା । କିନ୍ତୁ ଏହି 'ପ୍ରକୃତି ମଣିଷ'ଟିର ସରଳ ଜୀବନ ଉପରେ ଦୁର୍ଯୋଗ ଦେଖାଗଲା ଯେତେବେଳେ ତା ଅଞ୍ଚଳରେ ବାହାର ଲୋକଙ୍କ ପ୍ରବେଶ ଘଟିଲା । ମୂଳତଃ ଆର୍ଯ୍ୟ ଓ ମୋଗଲ ଶାସକମାନେ ଆଦିବାସୀ ଅଞ୍ଚଳକୁ



ନିଜ ଶାସନାଧିନ କରିବାକୁ ଯାଇ ସେମାନଙ୍କ ଉପରେ ଶୋଷଣର ପ୍ରଥମ ପର୍ବ ଆରମ୍ଭ କଲେ । କେବଳ ଆବଶ୍ୟକୀୟ କାଠ ସଂଗ୍ରହ ଓ ପଶୁ ଶୀକାର ପାଇଁ ହିଁ ଜଙ୍ଗଲକୁ ବ୍ୟବହାର କରିବା ଛଡା ସେମାନଙ୍କର କୌଣସି ଅର୍ଥନୈତିକ କାର୍ଯ୍ୟ କଳାପ ନଥିଲା ! ସମଗ୍ର ଜଙ୍ଗଲ ଉପରେ ବସ୍ତୁତଃ ଆଦିବାସୀ ବା ସ୍ଥାନୀୟ ଲୋକଙ୍କର ହିଁ ଅଖଣ୍ଡ ଅଧିକାର ଥିଲା । ବ୍ରିଟିଶମାନଙ୍କ ଆଗମନ ପରେ ଭାରତର ଜଙ୍ଗଲ ଭିତରେ ବିଭିନ୍ନ ଉଦ୍ଦେଶ୍ୟରେ ବ୍ରିଟିଶ ପୁଞ୍ଜିର ପ୍ରବେଶ ଘଟିଲା । ବ୍ରିଟିଶ ଶାସକମାନେ ପ୍ରଥମେ ରେଳ ଲାଇନ ନିର୍ମାଣ ପାଇଁ ଜଙ୍ଗଲରୁ ବ୍ୟାପକ କାଠ କାଟିବା ଓ କେତେକ ଶିଳ୍ପ ପାଇଁ କଞ୍ଚାମାଲ ଯୋଗାଡ କରିବା ମଧ୍ୟଦେଇ ଦେଶର ଜଙ୍ଗଲ ଉପରେ ଲୋଲୁପ ଦୃଷ୍ଟି ପକାଇଲେ । ପରେ କଫି, ଚା, ନୀଳ ଆଦିର ବ୍ୟବସାୟିକ ଚାଷ ନାଁରେ ତଥା ବାଣିଜ୍ୟ ଓ କାରଖାନା ନାଁରେ ଜଙ୍ଗଲ ଭିତରେ ବ୍ରିଟିଶ ପୁଞ୍ଜିର ପ୍ରବେଶ ଏକ ନୂଆ ସମ୍ପତ୍ତି ସମ୍ପର୍କ (Property Relation)କୁ ସୃଷ୍ଟି କଲା । ଯୁଦ୍ଧ କାର୍ଯ୍ୟକଳାପ ଓ ଯୁଦ୍ଧ ପାଇଁ ପରିବହନ ଦୃଷ୍ଟିରୁ ଆବଶ୍ୟକତା ଏହି ପ୍ରକ୍ରିୟାକୁ ଆହୁରି ତ୍ୱରାନ୍ୱିତ କଲା । କାରଖାନାରେ କଞ୍ଚାମାଲ ରୂପେ ତଥା ଜାହାଜ, ରେଳପଥ, ସଡକ ଓ ଗୃହ ନିର୍ମାଣରେ କାଠର ବ୍ୟାପକ ବ୍ୟବହାର ଜଙ୍ଗଲଜାତ ଉତ୍ପାଦନକୁ ଏକ ପଣ୍ୟରେ ପରିଣତ କଲା ।

ଭାରତର ଜଙ୍ଗଲରେ ଥିବା ଏହି ବିପୁଳ ସମ୍ପଦକୁ କିପରି ସହଜରେ ଲୁଟ୍ କରିହେବ ସେଥିପାଇଁ ବ୍ରିଟିଶମାନେ ଏକ ବିଧିବଦ୍ଧ ଯୋଜନା କଲେ । ବ୍ରିଟିଶ ଆଗମନର ପୂର୍ବରୁ ମୂଳତଃ ଆର୍ଯ୍ୟ ଓ ମୋଗଲ ଶାସକମାନେ ଆଦିବାସୀ ଅଞ୍ଚଳକୁ ନିଜ ଶାସନାଧିନ କରିବାକୁ ଯାଇ ସେମାନଙ୍କ ଉପରେ ଶୋଷଣର ପ୍ରଥମ ପର୍ବ ଆରମ୍ଭ କଲେ । କିନ୍ତୁ ଆଦିବାସୀ ଅଞ୍ଚଳ ଦୁର୍ଗମ ଘାଟିରାସ୍ତା, ମାଲୁଆ ଜ୍ୱର-ରୋଗର ପ୍ରକୋପ ତଥା ହିଂସ୍ର ଜୀବଜନ୍ତୁଙ୍କ ଭୟ ଯୋଗୁଁ ସେମାନେ ସେଠାରେ ଦୀର୍ଘ ସମୟ ଧରି ତିଷ୍ଠି ରହିବା ସମ୍ଭବ ହେଲାନି । ବାହାର ସଭ୍ୟତାଠାରୁ ବିଛିନ୍ନ ଆଦିବାସୀ ସମାଜ ନିଜ ଭିତରେ ଏକ ପ୍ରକାର ଆତ୍ମନିୟନ୍ତ୍ରଣ ଭିତ୍ତିକ ଶାସନ ଚଳାଇବା ସହ ପ୍ରକୃତିକୁ କେନ୍ଦ୍ରକରି ସେମାନଙ୍କ ନିଜସ୍ୱ ଆଇନ କାନୁନ ଥିଲା । ନିଜ ଜୀବନ ଶୈଳୀ ଓ ଚାରିପାଖରେ ଥିବା ପ୍ରାକୃତିକ ସମ୍ପଦ ଉପରେ ସେମାନଙ୍କ ଯେଉଁ ସ୍ୱାଧୀନତା ଥିଲା ତା ଉପରେ ବାହ୍ୟ ହସ୍ତକ୍ଷେପକୁ ସହ୍ୟ କରିବାକୁ ସେମାନେ ପ୍ରସ୍ତୁତ ନଥିଲେ । ଏହି କାରଣରୁ ହିଁ ଇତିହାସରେ ଅନେକ ଆଦିବାସୀ ବିଦ୍ରୋହ ଓ ପ୍ରତିରୋଧ ସଂଗ୍ରାମ ଦେଖିବାକୁ ମିଳିଛି । ବ୍ରିଟିଶ ଶାସକମାନେ ମଧ୍ୟ ଆଦିବାସୀମାନଙ୍କ ଲଢୁଆ



ପ୍ରତିରୋଧର ସମ୍ମୁଖୀନ ହୋଇ ସମତଳ ଅଞ୍ଚଳରେ ନିଜ ଶାସନ ପ୍ରତିଷ୍ଠା କରିବାରେ ଅନେକ ପରେ ଯାଇ ଆଦିବାସୀ ଅଞ୍ଚଳକୁ ନିଜ ଶାସନାଧିନ କରିବାକୁ ସକ୍ଷମ ହୋଇଥିଲେ ।

ଚତୁର ବ୍ରିଟିଶ ଶାସକମାନେ ମାଳ ଅଞ୍ଚଳକୁ ନିଜ ଅଧିନକୁ ନେବା ପାଇଁ ଏକ ସୁଚିନ୍ତିତ ଯୋଜନା ତିଆରି କଲେ । ସ୍ଥାନୀୟ ଜମିଦାର ଓ ସେମାନଙ୍କ ଏଜେଣ୍ଟଙ୍କ ସହାୟତାରେ ପ୍ରଥମେ ମାଳ ଅଞ୍ଚଳକୁ ବେପାର କରିବା ପାଇଁ ସମତଳ ଅଞ୍ଚଳରୁ କିଛି ସାହୁକାରଙ୍କୁ ପଠାଗଲା । ସେମାନେ ଲୁଣ, କିରୋସିନି ଆଦି ବିକ୍ରି କରିବା ମଧ୍ୟ ଦେଇ ଆଦିବାସୀ ଅଞ୍ଚଳରେ ବଜାର ସୃଷ୍ଟି କରିବା ସହ ସେମାନଙ୍କୁ ଶୋଷଣ କରିବାକୁ ଲାଗିଲେ । ବ୍ରିଟିଶ ପ୍ରୋତ୍ସାହନରେ ସମତଳ ଅଞ୍ଚଳରୁ ଶୁଣ୍ଡି ଓ ପାଣ ସଂପ୍ରଦାୟର ଲୋକେ ଆଦିବାସୀ ଅଞ୍ଚଳରେ ପ୍ରବେଶ କଲେ । ଆଗରୁ ସଲପ, ଖଜୁରୀ ଆଦି ଗଛରୁ ରସ ବାହାର କରି ସେଥିରେ କିଛି ଚେର ମୂଳ ସହିତ ମିଶାଇ ମଦ ରୂପେ ବ୍ୟବହାର କରି ଆସୁଥିବା ଆଦିବାସୀଙ୍କୁ ସେମାନେ ରନ୍ଧାମଦ ବିକିବାକୁ ଲାଗିଲେ । ସମତଳରୁ ଆସିଥିବା ପାଣ ସଂପ୍ରଦାୟର ଲୋକେ ଆଦିବାସୀ ଅଞ୍ଚଳର ପରିସ୍ଥିତି ତଥା ଆଦିବାସୀ ନେତାଙ୍କ ଉପରେ ଖବର ସଂଗ୍ରହ କରି ବ୍ରିଟିଶ ସରକାରଙ୍କୁ ଯୋଗାଇବାକୁ ଲାଗିଲେ । ଏହିପରି ଭାବେ ଆଦିବାସୀ ଅଞ୍ଚଳରେ ପ୍ରଥମକରି ବଜାର ଓ ଶୋଷଣ ପ୍ରକ୍ରିୟା ସହ ବ୍ରିଟିଶ ଶାସନ ଆରମ୍ଭ ହେଲା । ଆଦିବାସୀଙ୍କ ସରଳତା ଓ ଅଶିକ୍ଷାର ସୁଯୋଗ ନେଇ ନେଲୁ ପାଞ୍ଚ, ଦେଲୁ ପାଞ୍ଚ ଓ ରହିଲା ପାଞ୍ଚର ହିସାବରେ ସେମାନଙ୍କୁ ନିର୍ମମ ଭାବେ ଶୋଷଣ କରି ଦରିଦ୍ର ଓ ଋଣଗ୍ରସ୍ତ କରି ଶେଷରେ ସେମାନଙ୍କ ଚାଷ ଜମି ଓ ଅନ୍ୟାନ୍ୟ ସମ୍ପତ୍ତିକୁ ନିଜ ଦଖଲକୁ ନେଲେ । ମାଳ ଅଞ୍ଚଳରେ ଆଦିବାସୀଙ୍କ ଯୁଗ ଯୁଗ ଧରି ରହି ଆସିଥିବା ଆତ୍ମନିର୍ଭରଶୀଳ ଅର୍ଥନୀତି ଭାଙ୍ଗି ନୂଆ କରି ଏକ ସାହୁକାର ଗୋଷ୍ଠୀ ତିଆରି ହେଲେ । ଲାଭଖୋର ସାହୁକାରମାନଙ୍କ ଜରିଆରେ ଆଦିବାସୀଙ୍କର ଅର୍ଥନୀତିକୁ ଦୁର୍ବଳ କରିବା ସହ ବ୍ରିଟିଶବାଲା ସମତଳ ଅଞ୍ଚଳରୁ ଯାଇଥିବା ପାତ୍ର, ମୁଠାଦାର ପ୍ରଭୃତିଙ୍କ ଜରିଆରେ ସେମାନଙ୍କ ଶାସନ ସ୍ଥାପନ କଲେ । ମାଳ ଅଞ୍ଚଳ ସବୁକୁ ନିଜ ନିୟନ୍ତ୍ରଣାଧିନ କରିବା ପରେ ବ୍ରିଟିଶମାନେ ଜଙ୍ଗଲକୁ ନିଜର ଔପନିବେଶିକ ସ୍ୱାର୍ଥରେ ବ୍ୟବହାର କରିବାରେ ପୂର୍ଣ୍ଣ ସୁଯୋଗ ପାଇଲେ । ଏହି କ୍ରମରେ ହିଁ ପ୍ରଥମେ ୧୮୬୫ ମସିହାରେ ଜଙ୍ଗଲ ଆଇନ ପ୍ରଣୟନ ସହ 'ଜଙ୍ଗଲ' ବିଭାଗ ଗଠନ କରାଗଲା । ଏହାଦ୍ୱାରା ଜଙ୍ଗଲ ଉପରେ ଆଗରୁ ଲୋକଙ୍କର ରହି-ଆସିଥିବା ପାରମ୍ପରିକ ଅଧିକାରକୁ କାଢ଼ି ନିଆଯିବା ସହ ଜଙ୍ଗଲ ଓ ତା ଭିତରେ ଥିବା ସମ୍ପଦକୁ ସରକାରୀ ସମ୍ପତ୍ତି ରୂପେ ଘୋଷଣା କରାଗଲା । ଜଙ୍ଗଲ ଭିତରେ ଲୋକଙ୍କ ପ୍ରବେଶ ଉପରେ କଟକଣା

ଲାଗୁ ହେବା ସହ ସରକାରୀ ନିର୍ଦ୍ଧାରିତ ଟିକସ ନଦେଇ କେହି ଜଙ୍ଗଲକୁ ବ୍ୟବହାର କଲେ ନୂଆ ଆଇନରେ ଜେଲ୍ ଓ ଜୋରିମାନାର ବ୍ୟବସ୍ଥା ରହିଲା ।

ପୁନଶ୍ଚ ବ୍ରିଟିଶମାନେ ୧୮୭୮ ମସିହାରେ ଭାରତ ଜଙ୍ଗଲ ଆଇନ ନାଁରେ ଜଙ୍ଗଲକୁ ସଂରକ୍ଷିତ, ସୁରକ୍ଷିତ ଓ ଗ୍ରାମ୍ୟ ବୋଲି ତିନି ଭାଗରେ ବିଭକ୍ତ କଲେ । ୧୮୯୪ରେ ଗୃହୀତ ରାଷ୍ଟ୍ରୀୟ ଜଙ୍ଗଲ ନୀତିରେ ପର୍ବତର ଗଡାଣିରେ ଥିବା ଅଞ୍ଚଳକୁ ସୁରକ୍ଷିତ ଜଙ୍ଗଲ ରୂପେ ଘୋଷଣା କରାଗଲା । ଏହା ଫଳରେ ଆଦିବାସୀମାନେ ଜଙ୍ଗଲରୁ ଲଘୁ ବନଜାତ ଦ୍ରବ୍ୟର ସଂଗ୍ରହର ଅଧିକାର ଓ ପୋଡୁଚାଷ ପାଇଁ କଟକଣାର ସମ୍ମୁଖୀନ ହେଲେ । ଏହାପରେ ୧୯୨୭ ମସିହାରେ ଭାରତ ଜଙ୍ଗଲ ଆଇନ ଏବଂ ୧୯୩୫ ମସିହାର ଭାରତ ଶାସନ ଆଇନ ଜରିଆରେ ବ୍ରିଟିଶମାନେ ଜଙ୍ଗଲ ଉପରେ ରାଷ୍ଟ୍ରର କ୍ଷମତକୁ ଅଧିକରୁ ଅଧିକ ସୁଦୃଢ଼ କଲେ । ଉପରୋକ୍ତ ଆଇନ କାନୁନ ଜରିଆରେ ବ୍ରିଟିଶମାନେ ସେମାନଙ୍କ ଦେଶର କମ୍ପାନୀଙ୍କ ପାଇଁ ଓ ନିଜ ଶାସନର ସ୍ୱାର୍ଥରେ ଜଙ୍ଗଲକୁ ପୂର୍ଣ୍ଣମାତ୍ରାରେ ଶୋଷଣ କରିବାକୁ ଲାଗିଲେ । କିନ୍ତୁ ଜଙ୍ଗଲ ସମ୍ପଦର ଅବାଧ ଲୁଟ୍ ପାଇଁ ଲୋକଙ୍କ ଯୁଗ ଯୁଗର ଅଧିକାରକୁ ଛଡେଇ ନେଇ ବ୍ରିଟିଶମାନେ ଯେଉଁ ଜଙ୍ଗଲ ଆଇନ ଓ ଜଙ୍ଗଲ ବିଭାଗ ତିଆରି କରିଥିଲେ ସେମାନଙ୍କ ଯିବା ପରେ ବି ତାକୁ ଜଙ୍ଗଲ ସୁରକ୍ଷା ଓ ଜାତୀୟ ସ୍ୱାର୍ଥ ନାଁରେ ଏଠାକର ଶାସକ ବର୍ଗ ବଜାୟ ରଖିଲେ । ବ୍ରିଟିଶର ଜଙ୍ଗଲ ଲୁଟ୍‌କୁ ପରିଚାଳିତ କରିବା ପାଇଁ ଯେଉଁ ଜଙ୍ଗଲ କର୍ମଚାରୀମାନେ ନିଯୁକ୍ତି ପାଇଥିଲେ ସେମାନେ ରାତି ରାତି ଜଙ୍ଗଲ ଓ ପରିବେଶର ରକ୍ଷାକାରୀ ପାଲଟିଗଲେ । ବ୍ରିଟିଶ ହଟିଲେ ଜଙ୍ଗଲ ଉପରେ ନିଜର ଅଧିକାରକୁ ଫେରି ପାଇବାକୁ ଆଶା କରି ଯେଉଁ ଆଦିବାସୀ ସମ୍ପ୍ରଦାୟ ଲକ୍ଷ ଲକ୍ଷ ସଂଖ୍ୟାରେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ଅବର୍ଣ୍ଣନୀୟ ବଳିଦାନ କରିଥିଲା, ୧୯୪୭ର କ୍ଷମତା ହସ୍ତାନ୍ତର ପରେ ଆମର ଶାସକମାନେ ସେମାନଙ୍କ ପ୍ରତି ଚରମ ବିଶ୍ୱାସଘାତକତା କଲେ ।

ଜଙ୍ଗଲ ଉପରେ ଆଦିବାସୀଙ୍କର ଅପହୃତ ଅଧିକାରକୁ ଫେରାଇବା ପରିବର୍ତ୍ତେ ଆମ ଶାସକ ଶ୍ରେଣୀ ଓଲଟା ସେମାନଙ୍କୁ ହିଁ ଜଙ୍ଗଲ ଧ୍ୱଂସକାରୀ ବୋଲି ଚିତ୍ରିତ କଲା । ତଥାକଥିତ ସ୍ୱାଧୀନତା ପରେ କଂଗ୍ରେସ, ଜନତା, ବିଜେପି ଆଦି ସବୁ ମାର୍କାର ସରକାରମାନେ ଦେଶୀ ବିଦେଶୀ ପୁଞ୍ଜିପତିଙ୍କ ସ୍ୱାର୍ଥରେ ଅଧିକରୁ ଅଧିକ ଶୋଷଣ ତଥା ଦମନମୂଳକ ଜଙ୍ଗଲ ଆଇନ ତିଆରି କଲେ । ଦେଶୀ ସରକାରମାନଙ୍କ ଆଇନରେ ପେଟ ପାଇଁ ଜଙ୍ଗଲକୁ



ବ୍ୟବହାର କରି ଆଦିବାସୀଙ୍କୁ ଜଙ୍ଗଲ ଅପରାଧୀ କହି ଜେଲ୍ ଓ ଜୋରିମାନା କରାଗଲା । ଅଥଚ ନାମ ମାତ୍ର ଲିଜ୍ ମୂଲ୍ୟ ଦେଇ କାଗଜ କଳ ଓ କରତ କଳ ମାଲିକମାନେ ଦିନ ଦ୍ୱିପହରରେ ମୂଲ୍ୟବାନ ଜଙ୍ଗଲକୁ ଉଜାଡି ଶହ ଶହ ଟ୍ରକ କାଠ, ବାଉଁଶ ନେବାରେ ସକ୍ଷମ ହେଲେ । ଜଙ୍ଗଲ ବିଭାଗ ନାଁରେ ବାହାରୁ ଧୋବ ଧାଉଳିଆ କର୍ମଚାରୀମାନେ ଆସି ଜଙ୍ଗଲର ସର୍ବେସର୍ବା ହେଲେ ଅଥଚ ଜଙ୍ଗଲ କୋଳରେ ପୁରୁଷ ପୁରୁଷ ଧରି ବଞ୍ଚି ଆସୁଥିବା ଆଦିବାସୀଟି ନିଜ ଜଙ୍ଗଲରେ ପର ହୋଇଗଲା । ଜଙ୍ଗଲକୁ କେବେ ଦେଖି ନଥିବା କିମ୍ବା ଜଙ୍ଗଲ ପ୍ରତି ଆନ୍ତରିକତା ନଥିବା ବିହିରାଗତ କର୍ମଚାରୀମାନେ ଅର୍ଥ ପାଇଁ ନୀରିହ ଆଦିବାସୀଙ୍କୁ ନିର୍ଯ୍ୟାତନା ଦେବା ସହ ଚୋରା କାଠ ମାଫିଆଙ୍କ ସହ ମିଶି ଜଙ୍ଗଲ ଧ୍ୱଂସର ମୂଳ କାରଣ ହେଲେ । ଏହି କାଣରୁ ହିଁ ସରକାରୀ ରାଜକୋଷରୁ ବନ ବିଭାଗ ନାଁରେ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଥିଲେ ମଧ ଦେଶରେ ପ୍ରତିବର୍ଷ ଦୃତ ଗତିରେ ଜଙ୍ଗଲ ଧ୍ୱଂସ ହେବାରେ ଲାଗିଛି ।

କିନ୍ତୁ ଯେଉଁ ସରକାରୀ କଳ ଓ ତାର ନୀତି ଜଙ୍ଗଲ ଧ୍ୱଂସ ପାଇଁ ଦାୟୀ ସେମାନେ ଆଦିବାସୀଙ୍କୁ ଏଥିପାଇଁ ଦାୟୀ କରୁଛନ୍ତି । ଆଦିବାସୀମାନେ କରୁଥିବା ପାରମ୍ପରିକ ପୋଡୁଚାଷର ଉଦାହରଣ ଦେଇ ସରକାରୀ କଳ ଓ କିଛି ଶିକ୍ଷିତ ବ୍ୟକ୍ତି ଆଦିବାସୀଙ୍କ ମୁଣ୍ଡରେ ଅଠା ବୋଳିବାକୁ ଭଲ ପାଆନ୍ତି । କାରଣ ପାହାଡର ଗଡାଣି ଅଞ୍ଚଳରେ ଥିବା ଗଛକୁ ସଫା କରି ଓ ତାର ଅବଶିଷ୍ଟାଂଶକୁ ପୋଡି ଯେଉଁ ବଗଡ ବା ଡଙ୍ଗର ପ୍ରସ୍ତୁତ ହୁଏ ତାହା ଖଣି କିମ୍ବା ଡେମ୍ ପରି କୌଣସି ଅଣ ଜଙ୍ଗଲ କାମରେ ଲାଗି ସବୁଦିନ ପାଇଁ ଜଙ୍ଗଲକୁ ନଷ୍ଟ କରିଦିଏନି । ପୋଡୁଚାଷ ପାଇଁ ଆଦିବାସୀ ଗୋଟିଏ ବଗଡ ବା ଡ଼ଙ୍ଗରକୁ ମାତ୍ର ତିନି ବର୍ଷ ପାଇଁ ବ୍ୟବହାର କରିଥାଏ । ତିନି ବର୍ଷ ପରେ ଏହି ପରିତ୍ୟକ୍ତ ବଗଡ଼ଟିରେ ପୁଣିଥରେ ନୂଆ ଜଙ୍ଗଲ ସୃଷ୍ଟି ହୋଇଯାଏ । ଏହି ପ୍ରକ୍ରିୟା ଶହ ଶହ ବର୍ଷ ଧରି ଚାଲି ଆସିଛି । ବଗଡ଼ ଚାଷ ପାଇଁ ପାହାଡର ଗଡାଣି ବା ଢ଼ାଲୁ ଅଞ୍ଚଳକୁ ବାଛିବା ପଛରେ ସେସ୍ଥାନର ଉର୍ବରତା ମୁଖ୍ୟ କାରଣ ଅଟେ । କାରଣ ଆଦିବାସୀ ପାଖରେ ସମତଳ ଜମି ଓ ଚାଷ ପାଇଁ ପୁଞ୍ଜିର ଅଭାବ ଥିବା ଯୋଗୁଁ ସେ ବଗଡ ଚାଷ କରି ବିନା ପୁଞ୍ଜିରେ ଅଧିକ ଆଦାୟ କରିଥାଏ । ଏହି ଚାଷର ସାଧାରଣତଃ କୃଷି ସରଞ୍ଜାମ କିମ୍ବା ରାସାୟନିକ ସାର ଓ କୀଟନାଶକର ଆବଶ୍ୟକତା ପଡ଼େ ନାହିଁ । ଗଲାବର୍ଷରୁ ସାଇତି ରଖିଥିବା ପାରମ୍ପରିକ ଦେଶୀ ବିହନ ଜରିଆରେ ସେ ଗୋଟି ବଗଡ଼ରେ କୁଣ୍ଡଧାନ, ମାଣ୍ଡିଆ, ଜହ୍ନୀ, ସୁଆଁ, କାଙ୍ଗୁ, କାନ୍ଦୁଲ, ଝୁଡୁଙ୍ଗ, କାଲ, କନ୍ଦା, ମକା ଏବଂ ସ୍ଥଳ ବିଶେଷରେ କାକଡ, କଦଳୀ, ଅମୃତଭଣ୍ଡା,



ସପୁରୀ ଆଦି ୧୦ରୁ ୧୫ ପ୍ରକାରର ଫସଲକୁ ବର୍ଷସାରା କ୍ରମାନ୍ୱୟରେ ଆଦାୟ କରିଥାଏ। ଏହି ଆଦାୟରୁ ସେ ନିଜର ଖାଇବା ଓ ବିହନ ପାଇଁ ରଖିବା ସହିତ ବଳକା ବଜାରରେ ବିକ୍ରୀ କରିଥାଏ । ପୋଡୁଚାଷ କରୁଥିବା ପ୍ରତ୍ୟେକ ଆଦିବାସୀ ପ୍ରାୟତଃ ନିଜ ବଗଡ଼ରୁ ଆଦାୟ ୨୦ରୁ ୪୦ ଭାଗ ପର୍ଯ୍ୟନ୍ତ ବିକ୍ରୀ କରୁଥିବା ଜଣାପଡିଛି । ଆଦିବାସୀଙ୍କ ଜୀବନ ଓ ଜୀବିକାର ଏକ ପ୍ରମୁଖ ଅଙ୍ଗ ହୋଇଥିବା ଏହି ପୋଡୁ ଚାଷ ସେମାନଙ୍କର ଶହ ଶହ ବର୍ଷର ଅଭିଜ୍ଞତା, ଜ୍ଞାନ ଓ ଅଭ୍ୟାସ ଉପରେ ପର୍ଯ୍ୟବେଶିତ ଅଟେ ଏବଂ ଏହା ଦ୍ୱାରା ଜଙ୍ଗଲ ଧ୍ୱଂସ ହେଉଛି ବୋଲି କୁହାଯିବା ଭୁଲହେବ ।

ଯଦି ବଞ୍ଚିବା ପାଇଁ ଆଦିବାସୀର ପାରମ୍ପରିକ ପୋଡୁ ଚାଷ ଉପରେ ନିର୍ଭରଶୀଳତାକୁ ଜଙ୍ଗଲ ଧ୍ୱଂସର କାରଣ ବୋଲି ଧରାଯିବ ତାହେଲେ ବି ତାହା ମୋଟ ଜଙ୍ଗଲ ଧ୍ୱଂସର ଏକ କ୍ଷୁଦ୍ର ଅଂଶ ଅଟେ । ଖୋଦ୍ ଓଡ଼ିଶା ସରକାରଙ୍କ ଜଙ୍ଗଲ ବିଭାଗର ତଥ୍ୟ ଅନୁଯାୟୀ ରାଜ୍ୟର ମୋଟ ୫୮,୧୩,୫୪୭ ହେକ୍ଟର ଜଙ୍ଗଲ ମଧ୍ୟରୁ ମାତ୍ର ୪୭,୫୦୦ହେକ୍ଟର ଜଙ୍ଗଲ ହିଁ ଘରୋଇ ଜବର ଦଖଲକାରୀ (ଯେଉଁଥିରେ ଆଦିବାସୀଙ୍କ ପୋଡୁ ଚାଷ ବି ଅର୍ନ୍ତଭୁକ୍ତ)ଙ୍କ ଦ୍ୱାରା ନଷ୍ଟ ହୋଇଛି । ଅନ୍ୟପଟେ ସରକାର ଏଯାଏଁ ଖଣି ଖନନ, ଶିଳ୍ପ ଓ ଡେମ୍ ନିର୍ମାଣ ଆଦି ବିଭିନ୍ନ ଅଣ ଜଙ୍ଗଲ କାର୍ଯ୍ୟ ପାଇଁ ୨,୩୭,୨୦୫ହେକ୍ଟର ଜଙ୍ଗଲକୁ ଧ୍ୱଂସ କରିଛନ୍ତି । ଏହା ବ୍ୟତିତ ବିଭିନ୍ନ ପ୍ରକଳ୍ପ ପାଇଁ ଆହୁରି ହଜାର ହଜାର ହେକ୍ଟରର ମୂଲ୍ୟବାନ ଜଙ୍ଗଲ ଧ୍ୱଂସ ହେବାକୁ ସ୍ଥିର ହୋଇଥିଲେ ମଧ୍ୟ ସ୍ଥାନୀୟ ଲୋକଙ୍କ ପ୍ରତିରୋଧ କିମ୍ବା ପରିବେଶ ମନ୍ତ୍ରଣାଳୟର ସ୍ୱୀକୃତି ଅଭାବରୁ ଅଟକି ରହିଛି । ଏହି ପରିପ୍ରେକ୍ଷୀରେ ଜଙ୍ଗଲ ଧ୍ୱଂସ ପାଇଁ ଦାୟୀ ଆଦିବାସୀ ନା ସରକାର ତାହା ବେଶ୍ ଜଣାପଡୁଛି ।

ଆଇନଗତରୂପ ଦେଇ ୧୮୬୫ ମସିହାରେ ବ୍ରିଟିଶ ଶାସକମାନେ ଆରମ୍ଭ କରିଥିବା ଜଙ୍ଗଲ ଲୁଟ୍ ୧୮୬୫ରୁ ୧୯୪୭ ପର୍ଯ୍ୟନ୍ତ ଅବଧି ମଧ୍ୟରେ ବ୍ରିଟିଶ ଶାସକମାନେ ବିଦେଶୀ କମ୍ପାନୀମାନଙ୍କ ମୁନାଫା ବୃଦ୍ଧି ଏବଂ ନିଜ ଶାସନକୁ ସୁଦୃଢ଼ କରି ରଖିବା ପାଇଁ ଭାରତୀୟ ଜଙ୍ଗଲକୁ ସିଧାସଳଖ ଲୁଟ୍ କଲେ । କିନ୍ତୁ ୧୯୪୭ର କ୍ଷମତା ହସ୍ତାନ୍ତର ପରେ ଆମ ଦେଶରେ ପୁଞ୍ଜିବାଦୀ ଓ ସାମନ୍ତବାଦୀ ଶକ୍ତିମାନେ କଂଗ୍ରେସ ଦଳ ନେତୃତ୍ୱରେ କ୍ଷମତାସୀନ ହେଲେ । ସେମାନେ ଜଙ୍ଗଲ ଉପରେ ଲୋକଙ୍କ ବହୁ ପ୍ରତିକ୍ଷିତ ଅଧିକାରକୁ ଫେରାଇବା ପରିବର୍ତ୍ତେ ବ୍ରିଟିଶ କାଇଦାରେ ନିଜର ମୁନାଫା ପାଇଁ ଜଙ୍ଗଲକୁ ପୂର୍ବବତ ଶୋଷଣ ଜାରୀ ରଖିଲେ । କଂଗ୍ରେସ ସରକାର ଆରମ୍ଭ କରିଥିବା ପୁଞ୍ଜିବାଦୀ ବିକାଶ

ପଦ୍ଧତିକୁ ପରବର୍ତ୍ତୀ ଅବସ୍ଥାରେ ଜନତା, ବିଜେପି ସମେତ ଅନ୍ୟାନ୍ୟ ଅଣ କଂଗ୍ରେସ ଶାସକ ଦଳମାନେ ମଧ୍ୟ ଅବ୍ୟାହତ ରଖି ଜଙ୍ଗଲର ଶୋଷଣକୁ ଆହୁରି ଜୋରଦାର କଲେ । ବିକାଶ ଓ ଜାତୀୟ ସ୍ୱାର୍ଥ ନାଁରେ ସରକାରୀ ଖର୍ଚ୍ଚରେ ସରକାର ନିଜର ଅଖଣ୍ଡ କ୍ଷମତା ବଳରେ ଯେଉଁ ସବୁ ବଡ଼ ବଡ଼ ନଦୀବନ୍ଧ ଯୋଜନା, ଖଣି ଖନନ ପ୍ରକଳ୍ପ ଓ ଶିଳ୍ପ ପ୍ରତିଷ୍ଠା କଲେ ସେଥିରେ ଲକ୍ଷ ଲକ୍ଷ ହେକ୍ଟରର ମୂଲ୍ୟବାନ ଜଙ୍ଗଲକୁ ନଷ୍ଟ କରାଗଲା । ସରକାରୀ ଉଦ୍ୟମ ବାହାରେ ଉପରୋକ୍ତ ଉଦ୍ଦେଶ୍ୟରେ ଦେଶୀ ବିଦେଶୀ କମ୍ପାନୀଙ୍କ ମୁନାଫା ପାଇଁ ମଧ୍ୟ ବଡ ବଡଜଙ୍ଗଲକୁ ସବୁଦିନ ପାଇଁ ଧ୍ୱଂସ କରି ଦିଆଗଲା । ଅସାଧୁ ଜଙ୍ଗଲ ଅଧିକାରୀଙ୍କ ସହାୟତାରେ ମାଫିଆମାନେ ଦିନ ଦ୍ୱିପହରରେ ଅଧିକାଂଶ ମୂଲ୍ୟବାନ ଜଙ୍ଗଲକୁ କାଟି ପଦା କରିଆସିଛନ୍ତି ।

ଜଙ୍ଗଲ ଶୋଷଣର ଅନ୍ୟଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ଆରମ୍ଭ ହୋଇଛି ଗତ ଏକ ଦଶନ୍ଧୀରୁ ଉର୍ଦ୍ଧ୍ୱ ସମୟ ଧରି । ଜଗତୀକରଣ, ଘରୋଇକରଣ ନାଁରେ ଚାଲିଥିବା ଆର୍ଥିକ ସଂସ୍କାର ଫଳରେ ଆମଦେଶରେ ବିଦେଶୀ ବହୁରାଷ୍ଟ୍ରୀୟ ପୁଞ୍ଜିର ଅବାଧ ପ୍ରବେଶ ଘଟିଛି । ସାରା ବିଶ୍ୱର ବୃହତ୍ତ କମ୍ପାନୀମାନଙ୍କ ପାଇଁ ଏବେ ଆମ ଦେଶ ଏକ ଆକର୍ଷଣୀୟ ଚରାଭୂଇଁ ପାଲଟିଛି । ଭାରତ ପରି ତୃତୀୟ ବିଶ୍ୱର ଗରିବ ଦେଶମାନଙ୍କରେ ଥିବା ମୂଲ୍ୟବାନ ପ୍ରାକୃତିକ ସମ୍ପଦକୁ ଲୁଟ୍ କରିବା ପାଇଁ ଏହି କମ୍ପାନୀମାନେ ନୀଳନକ୍ସା ତିଆରି କରି ସାରିଛନ୍ତି । ସେମାନଙ୍କ ଏହି ଷଡ଼ଯନ୍ତ୍ରକୁ ସୁଗମ କରିବା ପାଇଁ ବିଶ୍ୱବ୍ୟାଙ୍କ, ଡିଏଫ୍ଆଇଡି, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ପରି ସାମ୍ରାଜ୍ୟବାଦୀ ସଂସ୍ଥାମାନେ ଅତି ଚତୁରତାର ସହ କାର୍ଯ୍ୟ କରୁଛନ୍ତି । ଗରିବ ଦେଶର ସରକାରମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ, ପରିମଳ, ସାକ୍ଷରତା, ଜଳସେଚନ, ଜଙ୍ଗଲ ପରିଚାଳନା ଆଦି ନାଁରେ ବିପୁଳ ପରିମାଣର ଋଣ ସହାୟତ ଦେଇ ବଶୀଭୂତ କରାଯାଉଛି । ଏହି ଦାତା ସଂସ୍ଥାମାନେ ଋଣ ଓ ସହୟତାର ମାୟାଜାଲରେ ସରକାରମାନଙ୍କୁ ଛନ୍ଦିଦେବା ପରେ ନାନା ଅନ୍ୟାୟପୂର୍ଣ୍ଣ ଓ ଅପମାନଜନକ ସର୍ତ୍ତସବୁ ଆରୋପ କରୁଛନ୍ତି । ସେମାନଙ୍କ ସର୍ତ୍ତ ଫଳରେ ଆମ ସରକାରମାନଙ୍କ ନୀତି ଓ ନିଷ୍ପତ୍ତି ରାତାରାତି ବଦଳିବାରେ ଲାଗିଛି ।

ବିଶ୍ୱବ୍ୟାଙ୍କ ନିର୍ଦ୍ଦେଶିତ ଜଙ୍ଗଲ ସଂସ୍କାର ରିପୋର୍ଟରେ କୁହାଯାଇଛି ଯେ ମୁଖ୍ୟତଃ ଚାରୋଟି କାରଣରୁ ଜଙ୍ଗଲର ବ୍ୟାପକ ଅବକ୍ଷୟ ଘଟୁଛି । ସେଗୁଡିକ ହେଲା:- (୧)ଆଦିବାସୀଙ୍କ ଦ୍ୱାରା କରାଯାଉଥିବା ସ୍ଥାନାନ୍ତରିତ ଚାଷ ବା ପୋଡୁ ଚାଷ, (୨)ଜଙ୍ଗଲ

ଭିତରେ ଅବୈଧ ଜନ ବସତି, (୩)ଜାଳେଣୀ କାଠର ଅବାଧ ସଂଗ୍ରହ, (୪)ଗୃହପାଳିତ ପଶୁଙ୍କ ଚାରଣ। ଉପରୋକ୍ତ ଚାରୋଟି କାରଣକୁ ଦେଖିଲେ ସ୍ପଷ୍ଟ ଯେ ବିଶ୍ୱବ୍ୟାଙ୍କ ଜଙ୍ଗଲ ଭିତରର ଆଦିବାସୀ ଓ ଗ୍ରାମୀଣ ଗରିବ ସଂପ୍ରଦାୟକୁ ହିଁ ଜଙ୍ଗଲ ଧ୍ୱଂସ ପାଇଁ ଦାୟୀ କରୁଛି ଏବଂ ଏମାନଙ୍କ ଯୋଗୁଁ ଗତ ୫୦ ବର୍ଷ ମଧ୍ୟରେ ଦେଶର ୪,୫୯,୯୭୮ କୋଟି ଟଙ୍କାର ପରିବେଶ ଜନିତ କ୍ଷତି ହୋଇଛି ବୋଲି ଅନୁମାନ କରିଛି। କିନ୍ତୁ ସରକାରଙ୍କ ବିଭିନ୍ନ ଖଣି, ନଦୀବନ୍ଧ, କାରଖାନା ଆଦି ବୃହତ୍ତ ଯୋଜନ ପରି ଅଣ ଜଙ୍ଗଲ କାର୍ଯ୍ୟରେ ଜଙ୍ଗଲ ବ୍ୟାପକ ଉପଯୋଗ, ଶିଳ୍ପ କାରଖାନାମାନଙ୍କ ଦ୍ୱାରା କଞ୍ଚାମାଲ ପାଇଁ ଜଙ୍ଗଲ ଲୁଟ କିମ୍ବା କାଠ ମାଫିଆଙ୍କ ଦ୍ୱାରା ହେଉଥିବା ଜଙ୍ଗଲ ଧ୍ୱଂସର ପଦୁଟିଏ ବି ଉଲ୍ଲେଖ ହୋଇନି। ଯଦିଓ ଉପରୋକ୍ତ ଅଣ ଜଙ୍ଗଲ କାର୍ଯ୍ୟରେ ଜଙ୍ଗଲ ଉପଯୋଗ କାରଣରୁ ହିଁ ଜଙ୍ଗଲକୁ ସର୍ବାଧିକ କ୍ଷତି ପହଞ୍ଚିଛି ବୋଲି ବିଭିନ୍ନ ସରକାରୀ ରିପୋର୍ଟରେ ଅନେକ ବାର କୁହାଯାଇଛି ତଥାପି ବିଶ୍ୱବ୍ୟାଙ୍କ ଏହି ତଥ୍ୟକୁ ଲୁଚାଇବା ମୂଳରେ ନିଶ୍ଚିତ ରୂପେ ଏକ ଅଭିସନ୍ଧି ରହିଛି। କାରଣ ବିଶ୍ୱବ୍ୟାଙ୍କ ଜଙ୍ଗଲ ଧ୍ୱଂସ ପାଇଁ ଆଦିବାସୀ ଓ ସ୍ଥାନୀୟ ଜନତାଙ୍କୁ ଦାୟୀ କରି କମ୍ପାନୀମାନଙ୍କୁ ଜଙ୍ଗଲକୁ ଟେକିଦେବାକୁ ଯୋଜନା ପ୍ରସ୍ତୁତ କରୁଛି। ବିଶ୍ୱବ୍ୟାଙ୍କ ଯାହା କହୁନା କାହିଁକି କିନ୍ତୁ ବାସ୍ତବତା ହେଲା ଯେ ଆମର ଜଙ୍ଗଲ ଓ ପରିବେଶର ଅବକ୍ଷୟ ପାଇଁ ଆଦିବାସୀ କିମ୍ବା ଗ୍ରାମୀଣ ଜନତା ନୁହଁନ୍ତି ବରଂ ଶାସକ ଶ୍ରେଣୀର ନୀତି ହିଁ ଦାୟୀ ଅଟେ। ୧୯୮୮ର ଜାତୀୟ ଜଙ୍ଗଲ ନୀତିରେ ବି ସ୍ପଷ୍ଟଭାବେ କୁହାଯାଇଛି "ଜଙ୍ଗଲକୁ ରାଜସ୍ୱ ଆଦାୟର ସ୍ରୋତ ଭାବେ ଦେଖିବାକୁ ହେବ ନାହିଁ। ଜଙ୍ଗଲ ହେଲା ନବୀକରଣ ଯୋଗ୍ୟ ପ୍ରାକୃତିକ ସମ୍ପଦ। ଏହା ଏପରି ଏକ ଜାତୀୟ ସମ୍ପତ୍ତି ଯାହାକୁ ଜନତା ଓ ଜାତୀୟ ସ୍ୱାର୍ଥରେ ସୁରକ୍ଷିତ ଓ ବୃଦ୍ଧି କରିବାକୁ ପଡିବ"। କିନ୍ତୁ ଆମ ଶାସକ ଶ୍ରେଣୀର ଗତ ପଚାଶ ବର୍ଷର ଜଙ୍ଗଲ ନୀତି ଜାତୀୟ ଜଙ୍ଗଲ ନୀତି ଜାତୀୟ ଜଙ୍ଗଲ ନୀତିର ମୂଳ ଭାବନାର ପରିପନ୍ଥୀ ଅଟେ।

ଜଙ୍ଗଲର ଘରୋଇକରଣ ପ୍ରାଥମିକ ପର୍ଯ୍ୟାୟଭାବେ ବିଶ୍ୱବ୍ୟାଙ୍କ ବିପୁଳ ଅର୍ଥ ଦେଇ ଗତ କିଛି ବର୍ଷ ଧରି ଜଙ୍ଗଲ ପରିଚାଳନା ଯୋଜନାକୁ ଓଡ଼ିଶା ସମେତ ବିଭିନ୍ନ ରାଜ୍ୟରେ କାର୍ଯ୍ୟକାରୀ କରି ଆସୁଛି। ଗ୍ରାମୀଣ ଜନତାଙ୍କୁ ଆର୍ଥିକ ସ୍ୱାବଲମ୍ବନଶୀଳ କରି ସେମାନଙ୍କ ଜଙ୍ଗଲ ଉପରେ ନିର୍ଭରଶୀଳତାକୁ କମାଇବା ଜରିଆରେ ଜଙ୍ଗଲକୁ ରକ୍ଷା କରିବା କଥା ଏଥିରେ କୁହାଯାଇଥିଲେ ମଧ୍ୟ ବାସ୍ତବତା ଠିକ୍ ଓଲଟା। ଏହି ଯୋଜନାରେ ବିଭିନ୍ନ ଗ୍ରାମରେ ଗଠିତ ବନ ସୁରକ୍ଷା ସମିତି ସବୁରେ ଜଙ୍ଗଲ ନିକଟବର୍ତ୍ତୀ ଗ୍ରାମାଞ୍ଚଳରେ ଥିବା ଧନୀ ଓ

ଉଚ୍ଚ ଜାତିର ଲୋକେ ମୁଖ୍ୟତଃ ନେତୃତ୍ୱରେ ଅଛନ୍ତି । ଗାଁ ଭାଁ ଗୋଟିଏ ଦୁଇଟି ଜାଗାକୁ ଛାଡିଦେଲେ ଜଙ୍ଗଲ ଭିତରେ ଥିବା ଗରିବ ଆଦିବାସୀମାନେ ଏହି କମିଟିରେ କୌଣସି ନେତୃତ୍ୱକାରୀ ଭୂମିକାରେ ନାହାଁନ୍ତି । ଗ୍ରାମୀଣ ସମାଜର ଶୋଷକ ରୂପେ ପରିଚିତ ଏହି ଅଣ ଆଦିବାସୀ ପ୍ରଭାବଶାଳୀ ଲୋକେ ହିଁ ଗତ ୫୦ବର୍ଷ ଧରି ଜଙ୍ଗଲକୁ ନିଜର ଅର୍ଥନୈତିକ ସ୍ୱାର୍ଥରେ ବ୍ୟବହାର କରି ଆସିଛନ୍ତି । ବୃକ୍ଷରୋପଣ ଓ ଜଙ୍ଗଲର ବିକାଶ ନାଁରେ ବନ ସୁରକ୍ଷା ସମିତି ପାଇଁ ଆସୁଥିବା ବିପୁଳ ସରକାରୀ ଅନୁଦାନକୁ ଲୁଟ୍ କରିବା ଏମାନଙ୍କ ମୁଖ୍ୟ କାମ ହୋଇଯାଇଛି ।

ବିଶ୍ୱବ୍ୟାଙ୍କର ଜଙ୍ଗଲ ସଂସ୍କାରର ଦ୍ୱିତୀୟ ପର୍ଯ୍ୟାୟ ହେଲା ଗୋଷ୍ଠୀ ଜଙ୍ଗଲ ପରିଚାଳନା । ଏଥିରେ ସରକାରଙ୍କ କୌଣସି ଭୂମିକା ରହିବ ନାହିଁ । ସରକାରୀ ଜଙ୍ଗଲ କର୍ମଚାରୀମାନେ ଜଙ୍ଗଲ ସୃଷ୍ଟି କରିବା ଓ ତାର ରକ୍ଷଣା ବେକ୍ଷଣ କରିବା ପରିବର୍ତ୍ତେ କେବଳ ସାହାଯ୍ୟକାରୀର ଭୂମିକା ଗ୍ରହଣ କରିବେ । ଜଳ ସେଚନ ବ୍ୟବସ୍ଥାରେ ଚାଲିଥିବା ପାଣି ପଞ୍ଚାୟତ ପରି ଏଠାରେ ସରକାର ଜଙ୍ଗଲର ସମସ୍ତ ଦାୟୀତ୍ୱରୁ ନିଜକୁ ମୁକ୍ତ କରି ସେସବୁକୁ ବନ ସୁରକ୍ଷା ସମିତି ହାତରେ ନ୍ୟସ୍ତ କରିବେ । ସମିତିର ବିଭିନ୍ନ କାର୍ଯ୍ୟକ୍ରମ ପାଇଁ ଘରୋଇ କମ୍ପାନୀମାନେ ପୁଞ୍ଜି ବିନିଯୋଗ ମଧ କରିପାରିବେ । ଆନ୍ଧ୍ରପ୍ରଦେଶର ଅନେକ ବନ ସୁରକ୍ଷା ସମିତିରେ ଆଇ.ଟି.ସି କମ୍ପାନୀ ଏବଂ ବିଭିନ୍ନ କାଗଜ କଳମାନେ ପୁଞ୍ଜି ବିନିଯୋଗ କରି ସେ ଅଞ୍ଚଳର ଜଙ୍ଗଲକୁ ନିଜ ମୁନାଫା ପାଇଁ ଲୁଟ୍ କରୁଛନ୍ତି । ସଂପୃକ୍ତ କମିଟିର ସମସ୍ତ ନିଷ୍ପତ୍ତିକୁ ପୁଞ୍ଜି ବିନିଯୋଗକାରୀ କମ୍ପାନୀମାନେ ପରିଚାଳିତ କରୁଛନ୍ତି । ଜଙ୍ଗଲ ସୁରକ୍ଷା ନାଁରେ ଆଦିବାସୀଙ୍କୁ ବାଦ ଦେଇ ଘରୋଇ କମ୍ପାନୀଙ୍କୁ ଜଙ୍ଗଲ ସମ୍ପଦକୁ ସୁରୁଖୁରୁରେ ଶୋଷଣ କରିବାର ସୁବିଧା ଦେବାର ଏହି ବିଶ୍ୱବ୍ୟାଙ୍କୀୟ ଷଡ଼ଯନ୍ତ୍ର ବାସ୍ତବିକ ତାରିଫଯୋଗ୍ୟ ।

ଜଙ୍ଗଲ ସହିତ ସାଧାରଣ ଜନତା ବା ଆଦିବାସୀର ସମ୍ପର୍କ ବହୁ ପୁରାତନ ଏବଂ ନଖ ମାଂସର ସମ୍ପର୍କ ଅଟେ । ଜଙ୍ଗଲର ସୁରକ୍ଷା ସହିତ ଆଦିବାସୀର ଜୀବନ ଜୀବିକା ଜଡିତ । ଆଦିବାସୀମାନଙ୍କ ଭିତରେ ପ୍ରଚଳିତ ଅସଂଖ୍ୟ ଲୋକ କଥା, ଗୀତ ଆଦି ଏହାର ସାକ୍ଷୀ ଅଛନ୍ତି । କିନ୍ତୁ ଆଧୁନିକ ପୁଞ୍ଜିବାଦୀ ରାଷ୍ଟ୍ର ତାର ସ୍ୱାର୍ଥ ପାଇଁ ଏହି ପ୍ରାକୃତିକ ସମ୍ପଦକୁ ନଷ୍ଟ କରି ଆସିଛି । ଜଙ୍ଗଲ କୋଳରେ ଜନ୍ମ ହୋଇ ବଞ୍ଚି ରହିଥିବା ଆଦିବାସୀଙ୍କୁ ଜଙ୍ଗଲରେ ପର କରିଛି । କେତେବେଳେ ବିକାଶ ନାଁରେ ଜଳ ଭଣ୍ଡାର ନିର୍ମାଣ କିମ୍ବା ଖଣି ଖୋଳିବା



ପାଇଁ ତ କେତେବେଳେ ଅଭୟାରଣ୍ୟ ନାଁରେ ତାକୁ ଜଙ୍ଗଲ ସହିତ ତା ଭିଟାମାଟିରୁ ନିର୍ମମ ଭାବେ ବେଦଖଲ କରିଛି । ଫଳ ସ୍ୱରୂପ ଆଦିବାସୀଙ୍କର ଅବଚେତନରେ ତା ମନରେ ଜଙ୍ଗଲ ନିଜର ନୁହେଁ ସରକାରର ବୋଲି ଏକ ଧାରଣା ସୃଷ୍ଟି ହେବାରେ ଲାଗିଛି । ଏହି କାରଣରୁ ସେ ଜଙ୍ଗଲ ଉପରେ ହେଉଥିବା ବାହ୍ୟ ଆକ୍ରମଣକୁ ବେଳକୁ ବେଳ ଆଖି ବୁଜିବାକୁ ବାଧ ହେଉଛି । ଆମର ଶାସକମାନେ ଆଦିବାସୀ ଜନତା ଓ ଜଙ୍ଗଲ ମଧରେ ଥିବା ଏହି ସରଳ ସମ୍ପର୍କଟିକୁ ବୁଝିବାକୁ ସକ୍ଷମ ହୋଇ ନାହାଁନ୍ତି । ତେଣୁ ଆଦିବାସୀକୁ ଜଙ୍ଗଲ ପାଇଁ ବିପଦ ବୋଲି ଚିତ୍ରିତ କରି ଜଙ୍ଗଲକୁ କେବେ ଦେଖିନଥିବା ବାହାର ଲୋକଙ୍କୁ ଜଙ୍ଗଲ ସୁରକ୍ଷାର ଦାୟୀତ୍ୱ ଦେଉଛନ୍ତି । ଗତ ପଚାଶ ବର୍ଷର ଅଭିଜ୍ଞତା ସ୍ପଷ୍ଟ କରୁଛି ଯେ ଜଙ୍ଗଲ ଉପରେ ସ୍ଥାନୀୟ ଜନତାଙ୍କ ଅଧିକାର ଗ୍ରହଣ ନହେଲା ଯାଏଁ ଜଙ୍ଗଲର ସୁରକ୍ଷା ସମ୍ଭବ ନୁହେଁ ।



## ଓଡ଼ିଶାରେ ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲାପରିଷଦ ନିର୍ବାଚନ କ୍ଷେତ୍ରର ସଂଖ୍ୟା

| ଜିଲ୍ଲା | ବ୍ଲକ | ଗ୍ରାମପଞ୍ଚାୟତ | ପଞ୍ଚାୟତ ସମିତି | ଜିଲ୍ଲା ପରିଷଦ |
|---|---|---|---|---|
| ଅନୁଗୁଳ | ୦୮ | ୨୦୯ | ୨୦୯ | ୨୮ |
| ବଲାଙ୍ଗୀର | ୧୪ | ୨୮୫ | ୨୮୫ | ୩୪ |
| ବାଲେଶ୍ୱର | ୧୨ | ୨୮୯ | ୨୮୯ | ୪୫ |
| ଭଦ୍ରଖ | ୦୭ | ୧୯୩ | ୧୯୩ | ୨୮ |
| ବରଗଡ | ୧୨ | ୨୪୮ | ୨୪୮ | ୩୪ |
| ବଉଦ | ୦୩ | ୬୩ | ୬୩ | ୦୯ |
| କଟକ | ୧୪ | ୩୪୨ | ୩୪୨ | ୪୬ |
| ଦେଓଗଡ | ୦୩ | ୬୦ | ୬୦ | ୦୬ |
| ଢେଙ୍କାନାଳ | ୦୮ | ୧୯୯ | ୧୯୯ | ୨୭ |
| ଗଜପତି | ୦୭ | ୧୨୯ | ୧୨୯ | ୧୪ |
| ଗଞ୍ଜାମ | ୨୨ | ୪୭୫ | ୪୭୫ | ୬୯ |
| ଜଗତସିଂହପୁର | ୦୮ | ୧୯୪ | ୧୯୪ | ୨୬ |
| ଯାଜପୁର | ୧୦ | ୨୮୦ | ୨୮୦ | ୩୯ |
| ଝାରସୁଗୁଡା | ୦୫ | ୭୮ | ୭୮ | ୦୯ |
| କଳାହାଣ୍ଡି | ୧୩ | ୨୭୩ | ୨୭୩ | ୩୬ |

| | | | | |
|---|---|---|---|---|
| କନ୍ଧମାଳ | ୧୨ | ୧୫୩ | ୧୫୩ | ୧୮ |
| କେନ୍ଦ୍ରାପଡ଼ା | ୦୯ | ୨୩୦ | ୨୩୦ | ୩୨ |
| କେନ୍ଦୁଝର | ୧୩ | ୨୮୬ | ୨୮୬ | ୩୭ |
| ଖୋର୍ଦ୍ଧା | ୧୦ | ୧୬୮ | ୧୬୮ | ୩୦ |
| କୋରାପୁଟ | ୧୪ | ୨୨୬ | ୨୨୬ | ୨୯ |
| ମାଲକାନଗିରି | ୦୭ | ୧୦୮ | ୧୦୪ | ୧୫ |
| ମୟୂରଭଞ୍ଜ | ୨୬ | ୩୮୨ | ୩୮୨ | ୫୬ |
| ନବରଙ୍ଗପୁର | ୧୦ | ୧୬୯ | ୧୬୬ | ୨୬ |
| ନୟାଗଡ଼ | ୦୮ | ୧୭୯ | ୧୭୯ | ୨୪ |
| ନୂଆପଡ଼ା | ୦୫ | ୧୦୯ | ୧୦୯ | ୧୪ |
| ପୁରୀ | ୧୧ | ୨୩୦ | ୨୩୦ | ୩୩ |
| ରାୟଗଡ଼ା | ୧୧ | ୧୭୧ | ୧୭୧ | ୨୨ |
| ସମ୍ବଲପୁର | ୦୯ | ୧୪୮ | ୧୪୮ | ୧୯ |
| ସୋନପୁର | ୦୬ | ୯୬ | ୯୬ | ୧୩ |
| ସୁନ୍ଦରଗଡ଼ | ୧୭ | ୨୬୨ | ୨୬୨ | ୩୫ |
| *ସମୁଦାୟ* | *୩୧୪* | *୬୨୩୪* | *୬୨୨୭* | *୮୫୪* |

*ଉତ୍ସ: ଓଡ଼ିଶା ନିର୍ବାଚନ କମିଶନ, ଭୁବନେଶ୍ୱର*

## ଜଙ୍ଗଲ ଅଞ୍ଚଳର ପରିମାଣ (୨୦୦୦-୨୦୦୧)
(ବର୍ଗ କିଲୋମିଟର)

| ଜିଲ୍ଲା | ଭୌଗଳିକ ପରିଷିମା | ସମୁଦାୟ ଜଙ୍ଗଲ ଅଞ୍ଚଳ |
|---|---|---|
| ଅନୁଗୁଳ | ୬୨୩୨ | ୨୭୧୬.୮୨ |
| ବଲାଙ୍ଗୀର | ୬୫୬୯ | ୧୫୪୩.୮୫ |
| ବାଲେଶ୍ୱର | ୩୬୩୪ | ୩୩୨.୨୧ |
| ଭଦ୍ରଖ | ୨୬୭୭ | ୯୭.୦୭ |
| ବରଗଡ | ୫୮୩୪ | ୧୨୧୬.୧୩ |
| ବଉଦ | ୩୪୪୪ | ୧୨୭୭.୧୭ |
| କଟକ | ୩୭୩୩ | ୭୮୭.୯୦ |
| ଦେଓଗଡ | ୨୭୮୪ | ୧୫୬୦.୨୨ |
| ଢେଙ୍କାନାଳ | ୪୫୯୫ | ୧୭୩୭.୬୨ |
| ଗଜପତି | ୩୮୫୦ | ୨୪୬୮.୯୮ |
| ଗଞ୍ଜାମ | ୮୭୦୬ | ୩୧୪୯.୯୦ |
| ଜଗତ୍‌ସିଂହପୁର | ୧୯୭୩ | ୧୩୨.୯୨ |
| ଯାଜପୁର | ୨୮୮୮ | ୭୨୫.୨୭ |
| ଝାରସୁଗୁଡା | ୨୨୦୦ | ୨୦୨.୪୪ |
| କଳାହାଣ୍ଡି | ୮୩୬୪ | ୨୫୩୮.୦୧ |

| | | |
|---|---|---|
| କନ୍ଧମାଳ | ୭୬୫୦ | ୫୭୦୯.୮୩ |
| କେନ୍ଦ୍ରାପଡା | ୨୫୪୮ | ୨୪୮.୦୫ |
| କେଉଁଝର | ୮୩୦୩ | ୩୦୯୭.୧୮ |
| ଖୋର୍ଦ୍ଧା | ୨୮୮୯ | ୬୧୮.୬୭ |
| କୋରାପୁଟ | ୭୮୯୭ | ୧୮୭୯.୫୩ |
| ମାଲକାନାଗିରି | ୬୧୯୦ | ୩୩୫୫.୮୮ |
| ମୟୁରଭଞ୍ଜ | ୧୦୪୧୮ | ୪୩୯୨.୧୩ |
| ନବରଙ୍ଗପୁର | ୫୨୯୪ | ୨୪୬୨.୭୩ |
| ନୟାଗଡ | ୪୨୪୨ | ୨୦୮୦.୯୭ |
| ନୂଆପଡା | ୩୪୦୮ | ୧୮୪୯.୬୯ |
| ପୁରୀ | ୩୦୫୧ | ୧୩୭.୧୦ |
| ରାୟଗଡା | ୭୫୮୦ | ୨୮୧୨.୩୩ |
| ସମ୍ବଲପୁର | ୬୬୯୮ | ୩୬୩୧.୭୭ |
| ସୋନପୁର | ୨୩୪୪ | ୪୧୫.୭୮ |
| ସୁନ୍ଦରଗଡ | ୯୭୧୨ | ୪୯୫୭.୩୨ |
| ***ସମୁଦାୟ*** | ***୧୫୫୭୦୭*** | ***୫୮୧୩୫.୪୭*** |

**Source: Forest and Livelihood, NCDS, Bhubaneswar**

| ଓଡିଶାର ଜଙ୍ଗଲ ଅଞ୍ଚଳ ଅଣ-ଜଙ୍ଗଲ ଅଞ୍ଚଳରେ ପରିଣତ | | | |
|---|---|---|---|
| କ୍ର.ନଂ. | ବର୍ଷ | ପ୍ରକଳ୍ପର ସଂଖ୍ୟା | ଅଣ ଜଙ୍ଗଲରେ ପରିଣତ(ହେକ୍ଟର) |
| ୦୧ | ୧୯୮୨ | ୦୧ | ୩.୪୩ |
| ୦୨. | ୧୯୮୩ | ୦୪ | ୧୨୪.୦୨ |
| ୦୩. | ୧୯୮୪ | ୧୮ | ୨୦୦୦.୮୯ |
| ୦୪. | ୧୯୮୫ | ୦୫ | ୫୧୭.୩୮ |
| ୦୫ | ୧୯୮୬ | ୦୩ | ୭୭୦.୩୮ |
| ୦୬. | ୧୯୮୭ | ୦୫ | ୯୫୨.୯୦ |
| ୦୭. | ୧୯୮୮ | ୦୯ | ୯୭୫.୬୩ |
| ୦୮. | ୧୯୮୯ | ୧୩ | ୧୭୩୭.୩୮ |
| ୦୯. | ୧୯୯୦ | ୨୪ | ୨୭୧୪.୯୨ |
| ୧୦. | ୧୯୯୧ | ୦୫ | ୩.୧୭ |
| ୧୧. | ୧୯୯୨ | ୦୭ | ୫୦୮.୮୪ |
| ୧୨. | ୧୯୯୩ | ୦୮ | ୪୭୨୯.୨୫ |
| ୧୩. | ୧୯୯୪ | ୦୩ | ୭୮୮.୯୨ |
| ୧୪. | ୧୯୯୫ | ୦୬ | ୩୧୭.୯୪ |
| ୧୫. | ୧୯୯୬ | ୧୨ | ୧୩୫୪.୬୧ |
| ୧୬. | ୧୯୯୭ | ୧୪ | ୧୯୦୨.୪୯ |
| ୧୭. | ୧୯୯୮-୯୯ | ୫୩ | ୪୭୨୨.୩୫ |
| ୧୮. | ୨୦୦୦-୦୧ | ୨୭ | ୧୨୧୯.୦୬ |
| ୦୧.୦୬.୨୦୦୧ ପର୍ଯ୍ୟନ୍ତ | | ୨୧୭ | ୨୫୩୪୩.୨୬ |

*Source: Forest and Livelihood, NCDS, Bhubaneswar*

# ଓଡିଶାର ଖଣିଜ ସମ୍ପଦ ଓ ଲିଜ୍‌ର ସ୍ଥିତି

| ଖଣିଜ ସମ୍ପଦ | ସମୁଦାୟ ଲିଜ୍ ସଂଖ୍ୟା | ଲିଜ୍ ଜମିର ପରିମାଣ(ହେକ୍ଟର) | କାର୍ଯ୍ୟକ୍ଷମ ଲିଜ୍ ସଂଖ୍ୟା |
|---|---|---|---|
| ଲୁହା ପଥର | ୭୭ | ୬୦୧୨୩ | ୪୬ |
| ଲୁହା ପଥର ଓ ମାଙ୍ଗାନିଜ୍ | ୬୩ | ୨୦୦୫.୫ | ୪୫ |
| ଲୁହା ପଥର ଓ ବକ୍ସାଇଟ୍ | ୦୨ | ୪୮୦ | ୦୨ |
| ବକ୍ସାଇଟ୍ | ୦୭ | ୮୯୬୩ | ୦୩ |
| ବକ୍ସାଇଟ୍ ଓ ମାଙ୍ଗାନିଜ୍ | ୦୧ | ୫୨ | ୦୧ |
| ମାଙ୍ଗାନିଜ୍ | ୩୭ | ୮୩୫୧ | ୨୦ |
| ଗ୍ରାଫାଇଟ୍ | ୧୨୬ | ୩୪୮୫ | ୫୧ |
| କ୍ରୋମାଇଟ୍ | ୨୨ | ୭୪୦୯ | ୧୭ |
| ଡୋଲମାଇଟ୍ | ୦୨ | ୪୩୫ | ୦୨ |
| ଲାଇମ୍ ଷ୍ଟୋନ | ୧୧ | ୪୭୨୩ | ୦୬ |
| ରତ୍ନ ପଥର | ୦୩ | ୧୨୭ | - |
| ଚିନା ମାଟି | ୧୪ | ୧୩୧୧ | ୦୬ |
| କୋଇଲା | ୨୬ | ୧୮୪୫୯ | ୨୬ |
| ଆଜ୍‌ବେଷ୍ଟସ | ୦୨ | ୧୬୬ | ୦୧ |
| ଲିଡ୍ ଓ ଜିଙ୍କ | ୦୧ | ୫୦୦ | ୦୧ |

*Source: Orissa Economic Survey - 2000-01*

# ଲେଖକ ପରିଚୟ

*ମନୋରଂଜନ ମହାନ୍ତି:*

ଦିଲ୍ଲୀ ବିଶ୍ୱ ବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗର ବରିଷ୍ଠ ପ୍ରଫେସର । ଜଣେ ଉଚ୍ଚକୋଟୀର ସମାଜବିଜ୍ଞାନୀ, ରାଜନୀତି ବିଶ୍ଳେଷକ, ଚୀନ ଦେଶର ଭାଷା, ସାମାଜିକ ଓ ରାଜନୈତିକ ଜନ ଜୀବନର ବିଶାରଦ ରୂପେ ପରିଚିତ । "ଓଡ଼ଶା ଦରିଦ୍ର କାହିଁକି" ଓ ଅନ୍ୟାନ୍ୟ ବହୁ ପୁସ୍ତକର ରଚୟିତା । ଗବେଷଣା ଚକ୍ରର ସଭାପତି ।

*ଭୂପେନ ମହାପାତ୍ର:*

ଅବସରପ୍ରାପ୍ତ ଡେପୁଟି କମାଣ୍ଡାଣ୍ଟ (କେନ୍ଦ୍ର ଶିଳ୍ପ ନିରାପତ୍ତା ବାହିନୀ) । ଓଡ଼ିଶାର ଜଣେ ଉଚ୍ଚକୋଟୀର ଗଳ୍ପ, ପ୍ରବନ୍ଧ ଓ ଭ୍ରମଣ କାହାଣୀ ଲେଖକ । ସମ୍ବାଦପତ୍ର ପୃଷ୍ଠାର ଜଣେ ନିୟମିତ ସ୍ତମ୍ଭକାର ।

*କିଶୋର ସାମଲ:*

ଭୁବନେଶ୍ୱରସ୍ଥିତ ନବକୃଷ୍ଣ ଚୌଧୁରୀ ଡେଭଲପମେଣ୍ଟ ଷ୍ଟଡିଜର ଅର୍ଥନୀତି ପ୍ରଫେସର । ଓଡ଼ିଶାର ବିକାଶ ଓ ବିସ୍ଥାପନ ଦିଗରେ ତାଙ୍କର ଉଚ୍ଚକୋଟୀର ଗବେଷଣା ପ୍ରସୂତ ନିବନ୍ଧ ପାଇଁ ଉଚ୍ଚ ପ୍ରଶଂସିତ । ଗବେଷଣା ଚକ୍ରର ସମ୍ପାଦକ ।

*ବିଜୟ ବହିଦାର:*

ଜଣେ ଜନବାଦୀ ବୁଦ୍ଧିଜୀବୀ ରୂପେ ପରିଚିତ । ସଂପ୍ରତି ବରହମ୍ପୁରସ୍ଥିତ ଖଲ୍ଲିକୋଟ ସ୍ୱୟଂଶାସିତ ମହାବିଦ୍ୟାଳୟରେ ପ୍ରାଧାପକରୂପେ କାର୍ଯ୍ୟରତ । "ଓଡ଼ିଶା ଦରିଦ୍ର କାହିଁକି" ପୁସ୍ତକର ରଚୟିତା ।

*ନଦୀୟାଚାନ୍ଦ କାନୁନ୍‌ଗୋ:*

ଅବସରପ୍ରାପ୍ତ ବନବିଭାଗ ଅଧିକାରୀ । ସମ୍ବାଦପତ୍ରରେ ନିରନ୍ତର ପରିବେଶ ସଂକ୍ରାନ୍ତୀୟ ଉଚ୍ଚକୋଟୀର ପ୍ରବନ୍ଧ ମାନ ଲେଖି ସେ ଉଚ୍ଚ ପ୍ରଶଂସିତ ।

*ଗୋଲକ ବିହାରୀ ନାଥ:*

ଝାରସୁଗୁଡାସ୍ଥିତ ଲକ୍ଷ୍ମୀ ନାରାୟଣ ମହାବିଦ୍ୟାଳୟର ଅର୍ଥନୀତି ବିଭାଗର ମୁଖ୍ୟ

ରୂପେ କାର୍ଯ୍ୟରତ । ଜଗତୀକରଣ, ଉଦାରୀକରଣ, ଖଣି, ଜଙ୍ଗଲ ପ୍ରଭୃତି ଉପରେ ବିଶ୍ଳେଷଣାତ୍ମକ ନିବନ୍ଧ ଲେଖି ସମଗ୍ର ଓଡ଼ିଶାରେ ପରିଚିତ ।

***ପ୍ରଫୁଲ୍ଲ ସାମନ୍ତରା:***

ବିଭିନ୍ନ ଜଳ ଆନ୍ଦୋଳନସହ ସଂପୃକ୍ତ । ଜଣେ ପରିବେଶବିତ୍ ରୂପେ ଜଣାଶୁଣା । ସଂପ୍ରତି ଲୋକ ଶକ୍ତି ଅଭିଯାନ, ଓଡ଼ିଶା ଶାଖାର ସଭାପତି ।

***ମାନସ ଜେନା:***

ଜଣେ ପ୍ରଗତିଶୀଳ ସାମାଜିକ କର୍ମୀ । ଓଡ଼ିଶା ମାଇନ୍ସ ଏରିଆ ପିପୁଲସ୍ ଆକ୍ସନ ନେଟୱାର୍କର ରାଜ୍ୟ ଆବାହକ । ଦୀର୍ଘ ଏକ ଦଶନ୍ଧିଧରି ରାଜ୍ୟର ଖଣି ସମସ୍ୟାକୁ ନେଇ କାର୍ଯ୍ୟରତ ।

***ନିରାକାର ବେଉରା:***

ପ୍ରଗତିଶୀଳ ସାମାଜିକ ଜନ ଆନ୍ଦୋଳନର କର୍ମୀ । ନୂଆଦିଲ୍ଲୀସ୍ଥିତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ ସାଇନ୍‌ସେସ୍ ଓଡ଼ିଶା ରାଜ୍ୟ ଶାଖାରେ କାର୍ଯ୍ୟରତ । ପଞ୍ଚାୟତିରାଜ ବ୍ୟବସ୍ଥାର ବିଭିନ୍ନ ଦିଗ ଉପରେ ଜଣେ ନିୟମିତ ସ୍ତମ୍ଭକାର ।

***ଦେବ ରଂଜନ:***

ଜନ ଆନ୍ଦୋଳନର ଜଣେ ସକ୍ରିୟ କର୍ମୀ । ଖଣି, ଜଙ୍ଗଲ, ବିସ୍ଥାପନ ଓ ଓଡ଼ିଶାର ବିକାଶର ପ୍ରଶ୍ନକୁ ନେଇ ରାଜ୍ୟ ସ୍ତରରେ କାର୍ଯ୍ୟରତ ।

***ପ୍ରେମଲାଲ ପଦ୍ମଶ୍ରୀ:***

ନିୟମଗିରୀ ସୁରକ୍ଷା ସମିତିର କର୍ମୀ । ସମାଜବାଦୀ ଜନ ପରିଷଦ, କଳାହାଣ୍ଡି ଜିଲ୍ଲାର ସଭାପତି ।

***ଭାଲଚନ୍ଦ୍ର ଷଡଙ୍ଗୀ:***

ବାମପନ୍ଥୀ ଚିନ୍ତାଧାରାର ଜଣେ ଲଢୁଆ କର୍ମୀ । ଦକ୍ଷିଣ ଓଡ଼ିଶାର ଜୀବନ ଜୀବିକା ସୁରକ୍ଷା ଆନ୍ଦୋଳନରେ ସକ୍ରିୟ । "ସଂଗ୍ରାମୀ ଏକତା" ପତ୍ରିକାର ସମ୍ପାଦକ ।

